


# ଆମ ଜାତୀୟ ପତାକା ଓ ଜାତୀୟ ସଙ୍ଗୀତ

# ଆମ ଜାତୀୟ ପତାକା

ଓ

# ଜାତୀୟ ସଙ୍ଗୀତ

ଶ୍ରୀ ରାମକୃଷ୍ଣ ନନ୍ଦ

କଟକ ପବ୍ଲିଶିଂ ହାଉସ୍

ପ୍ରଥମ ପ୍ରକାଶ : ୧୯୮୫

ପ୍ରକାଶକ :

ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି

କଟକ ପବ୍ଲିଶିଂ ହାଉସ୍

ବାଲୁବଜାର, କଟକ—୭୫୩୦୦୨

ମୁଦ୍ରଣ :

ସଂସାର ପ୍ରେସ

କଟକ-୭୫୩୦୦୯

ମୂଲ୍ୟ ଟ [illegible]-୫୦

# କିଛି ବିଷୟରେ ପଦେ

ବର୍ତ୍ତମାନ ଭାରତରେ ବୋଧହୁଏ ଏପରି କେହି ନାହିଁ ଯେ ଆମର ଜାତୀୟ ପତାକା ନ ଦେଖିଛି ଓ ଜାତୀୟ ସଙ୍ଗୀତ ନ ଶୁଣିଛି । କିନ୍ତୁ ଅନେକ ଲୋକ ଅଛନ୍ତି ଯେଉଁମାନେ ଏ ଦୁଇଟି ବିଷୟରେ ସବୁ କଥା ଜାଣନ୍ତି ନାହିଁ । ଆମ ସ୍ୱାଧୀନତା ସଂଗ୍ରାମ ସଙ୍ଗେ ଜାତୀୟ ପତାକା ଏତେ ନିବିଡ଼ଭାବେ ସଂପୃକ୍ତ ଯେ ତାର କାହାଣୀ ନ ଜାଣିବା ଏକ ଅପରାଧ ବୋଲି ମନେ ହୁଏ । ସେହି ତିରଙ୍ଗା କନା ଖଣ୍ଡିକରେ ବହୁ ଲହୁଲୁହର କାହାଣୀ ଜଡ଼ିତ ଅଛି । ସେଥିରୁ କିଛି ସଂଗ୍ରହ କରି ମୁଁ ଏହି କ୍ଷୁଦ୍ର ପୁସ୍ତକରେ ଆମ ରାଜ୍ୟର ବାଳକବାଳିକାମାନଙ୍କ ଆଗରେ ବାଢ଼ିବାର ଚେଷ୍ଟା କରିଛି ।

ଏହି ପୁସ୍ତକରେ ପ୍ରଦତ୍ତ କେତେକ ବିଷୟ ମୁଁ ଶ୍ରୀ ରାଜକୃଷ୍ଣ ବୋଷ, ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ଶ୍ରୀ ଶରତଚନ୍ଦ୍ର ମହାରଣା ଓ ଶ୍ରୀ ବୈକୁଣ୍ଠନାଥ ମହାନ୍ତିଙ୍କଠାରୁ ପାଇଛି । ତା'ଛଡ଼ା ଅମୃତ ବଜାର ପତ୍ରିକାର ସ୍ୱାଧୀନତା ଦିବସ ବିଶେଷାଙ୍କରୁ ଏବଂ 'ସଂସାର' ପତ୍ରିକାରେ ପ୍ରକାଶିତ ଡଃ ବସନ୍ତ କୁମାର ବେହୁରା ଓ ଶ୍ରୀ ନିରଞ୍ଜନ ବେହେରାଙ୍କ ଲେଖାରୁ କେତେକ ବିବରଣୀ ସଂଗ୍ରହ କରିଛି । ଏ ସମସ୍ତଙ୍କୁ ମୋର କୃତଜ୍ଞତା ଜଣାଉଛି ।

ଲେଖକ

# ସୂଚୀ

# ସ୍ୱାଧୀନ ଭାରତର ପତାକା

ଆଜ ଅଗଷ୍ଟ ମାସର ପନ୍ଦର ତାରିଖ । ବଡ଼ ସକାଳୁ ଉଠି ଦୀପକ ଓ ଜୁଲୀ ଗୋଟିଏ ତିରଙ୍ଗା ପତାକା ଓ ଛୋଟ ବାଉଁଶ ଖଣ୍ଡେ ଧରି ଛାତଉପରକୁ ଗଲେ । ଚାରିଆଡ଼କୁ ଅନାଇ ଦେଖିଲେ ଆଜ କେତେକ ଘର ଉପରେ ମଧ୍ୟ ଜାତୀୟ ପତାକା ଉଡ଼ୁଛି । ସେମାନେ ତରତର ହୋଇ ପତାକାଟିକୁ ବାଉଁଶ ଅଗରେ ଗଳାଇଦେଇ ପାଚିପିଣ୍ଡରେ ଶକ୍ତରୂପେ ବାନ୍ଧିଦେଲେ । ପତାକାଟି ପବନରେ ଫରଫର ହୋଇ ଉଡ଼ିବାର ଦେଖି ଭାଇଭଉଣୀଙ୍କର ମନ ଆନନ୍ଦରେ ନାଚିଉଠିଲା । ତଳକୁ ଓହ୍ଲାଇ ଆସୁ ଆସୁ ଦୀପକ କହିଲା, "ସାର୍ କହିଛନ୍ତି ଠିକ୍ ସାତଟା ବେଳକୁ ସ୍କୁଲରେ ପତାକା ଉତ୍ତୋଳନ କରାଯିବ । ଶୀଘ୍ର ଯିବା ଚାଲ ।"

ସୁଭଦ୍ରା ଦେବୀ ପିଲାମାନଙ୍କ ପାଇଁ ଜଳଖିଆ ତିଆରିକରି ରଖି-ଥିଲେ । ଖାଇ ସାରି ଦୀପକ ଓ ଜୁଲୀ ବାହାରିଗଲେ ସ୍କୁଲକୁ । ଆଜ ଛୁଟି ଥିଲେ ସୁଦ୍ଧା ସମସ୍ତଙ୍କୁ ଯିବାକୁ ପ୍ରଧାନ ଶିକ୍ଷକ କହିଛନ୍ତି । ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ଆଜ ସ୍କୁଲକୁ ଡକାଯାଇଛି । ସେ ପତାକା ଉତ୍ତୋଳନ ଉତ୍ସବର ସଭାପତି ଓ ମୁଖ୍ୟ ଅତିଥି ହେବେ । ତେଣୁ ବିଳମ୍ବରେ ଗଲେ ସାର୍ ବିରକ୍ତ ହେବେ ।

ଦୀପକ ଓ ଜୁଲୀ ସ୍କୁଲରେ ପହଞ୍ଚିଲାବେଳକୁ ସଭା ଆରମ୍ଭ ହୋଇ ନ ଥିଲା । ପିଲାମାନେ ପଡ଼ିଆରେ ବସିବାପରେ ପ୍ରଧାନ ଶିକ୍ଷକ ସଭାପତି ଓ ମୁଖ୍ୟ ଅତିଥିଙ୍କୁ ସାଙ୍ଗରେ ନେଇ ସେଠାରେ ପହଞ୍ଚିଲେ । ଠିକ୍ ସାତଟାବେଳକୁ ସଭାକାର୍ଯ୍ୟ ଆରମ୍ଭ ହେଲା ।

ପ୍ରଧାନ ଶିକ୍ଷକ ସଂକ୍ଷେପରେ ଅତିଥିଦୁହିଁଙ୍କର ପରିଚୟ ଦେଇସାରି ସଭାପତିଙ୍କୁ ପତାକା ଉତ୍ତୋଳନ କରିବାପାଇଁ ଅନୁରୋଧ କଲେ । ସେ ମହାଶୟ ପତାକା ବନ୍ଧାଥିବା ଖୁଣ୍ଟ ପାଖକୁ ଯାଇ ଦଉଡ଼ିଟିକୁ ଟାଣିଦେବାମାତ୍ରେ ତିରଙ୍ଗା ପତାକାଟି ଉପରକୁ ଉଠିଗଲା । ଠିକ୍ ସେହି ସମୟରେ ସେଥିରେ ଥିବା ଫୁଲଗୁଡ଼ିକ ସ୍ତମ୍ଭବେଦୀକୁ ବିଛୁଡ଼ି ହୋଇ-ପଡ଼ିଲା ଏବଂ ପତାକାଟି ଫିଟିଯାଇ ପବନରେ ଉଡ଼ିବାରେ ଲାଗିଲା ।

ଏହା ପରେ ସମସ୍ତେ ଠିଆହୋଇ ଏକ ସ୍ୱରରେ ଗାନ କଲେ ଆମ ଜାତୀୟ ସଙ୍ଗୀତ 'ଜନଗଣ-ମନ-ଅଧିନାୟକ ଜୟ ହେ ଭାରତ-ଭାଗ୍ୟବିଧାତା······' ।

ସଙ୍ଗୀତଟି ଗାଇସାରି ସମସ୍ତେ ଯେଝା ସ୍ଥାନରେ ବସିପଡ଼ିଲେ । ତାପରେ ସଭାପତିଙ୍କ ଅନୁରୋଧକ୍ରମେ ମୁଖ୍ୟ ଅତିଥି ମହାଶୟ ଠିଆ ହୋଇ ଜାତୀୟ ପତାକା ବିଷୟରେ ଏକ ଭାଷଣ ଦେଲେ ।

ସେ କହିଲେ, "ପିଲାମାନେ, ଆଜି ଆମ ମୁଣ୍ଡଉପରେ ଏଇ ଯେଉଁ ତିରଙ୍ଗା ପତାକା ଉଡ଼ୁଛି, ତାହା ଆମ ଭାରତର ଜାତୀୟ ପତାକା । ଖଣ୍ଡେ ସାମାନ୍ୟ ଖଦଡ଼ କନାରେ ତିଆରି ହୋଇଥିଲେ ସୁଦ୍ଧା ଏହା ଆମର ଅମୂଲ୍ୟ ସମ୍ପଦ । କାଠ ପଥରର ମୂର୍ତ୍ତିକୁ ଆମେ ଯେପରି ଦେବତା ଜ୍ଞାନରେ ପୂଜା କରୁ, ଏହାକୁ ସେହିପରି ସର୍ବୋଚ୍ଚ ସମ୍ମାନ ଦେଉଁ; କାରଣ ଏହା ଆମ ସ୍ୱାଧୀନତାର ସଙ୍କେତ । ତୁମେ ଜାଣିଥିବ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା । ତା ପୂର୍ବରୁ ଇଂରେଜମାନେ ଏ ଦେଶରେ ରାଜତ୍ୱ କରୁଥିଲେ । ସେତେବେଳେ ଆମର କୌଣସି ନିଜତ୍ୱ ନ ଥିଲା । ପୃଥିବୀର ଅନ୍ୟାନ୍ୟ ଦେଶ ସାଙ୍ଗରେ ଆମେ କାନ୍ଧ ମିଳାଇ ଠିଆ ହୋଇପାରୁ ନ ଥିଲୁ । ଆମ ଦେଶରେ ସବୁବେଳେ ଉଡ଼ୁଥିଲା

ବ୍ରିଟିଶ ଜାତିର ପତାକା 'ଇଉନିୟନ ଜ୍ୟାକ୍' (Union Jack)। ଉତ୍ସବ ଦିନମାନଙ୍କରେ ତାଙ୍କ ପତାକାକୁ ସମ୍ମାନ ଦେବାକୁ ଆମେ ବାଧ୍ୟ ହେଉଥିଲୁ । ତାଙ୍କର ରଜାଙ୍କର ସ୍ତୁତି ଗାନ କରି ତାଙ୍କର ଜାତୀୟ ସଙ୍ଗୀତ ବୋଲୁଥିଲୁ। କି ଲଜ୍ଜାର କଥା ଭାବିଲ ଦେଖି !

ଆମର ନେତାମାନେ ଏହା ସହିପାରିଲେ ନାହିଁ । ସେମାନେ ମନେ ପକାଇଲେ ଆମ ପୂର୍ବପୁରୁଷଙ୍କ ବାଣୀ—'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ', ଅର୍ଥାତ୍ ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ ବଡ଼ । ଆମର ଜନ୍ମଭୂମି ଭାରତମାତାଙ୍କୁ ବିଦେଶୀଙ୍କ ହାତରେ ଛାଡ଼ି ଦେଇ ଆମେ କଦାପି ଶାନ୍ତିରେ ରହି ପାରିବା ନାହିଁ । ଜୀବନ ଯାଉ ପଛେ, ଆମେ ଲଢ଼ିବା ଏବଂ ଦେଶକୁ ବିଦେଶୀ କବଳରୁ ମୁକ୍ତ କରିବା ।



ଏହି ପଣ କରି ସେମାନେ ଇଂରେଜ ଶାସନ ବିରୁଦ୍ଧରେ ସଂଗ୍ରାମ କଲେ । ମହାତ୍ମା ଗାନ୍ଧୀ ଥିଲେ ଏହି ମୁକ୍ତି-ସଂଗ୍ରାମର ସେନାପତି । ଦୀର୍ଘ କାଳ ଧରି ଏହି ଲଢ଼େଇ ଚାଲିଲା । ଦେଶର ବହୁ ନରନାରୀ ଆନ୍ଦୋଳନରେ ଯୋଗ ଦେଇ ଜେଲ୍ ବରଣ କଲେ ଓ ଜୀବନ ଦେଲେ । ଶେଷରେ ଆମର ବିଜୟ ହେଲା । ୧୯୪୭ ମସିହା ଏଇ ଅଗଷ୍ଟ ୧୫ ତାରିଖ ଦିନ ଇଂରେଜ ସରକାର ଆମ ହାତରେ ଶାସନ କ୍ଷମତା ଦେଇ ଏ ଦେଶରୁ ବିଦାୟ ନେଲେ । ସେହି ଦିନଠାରୁ ଆମ ଦେଶକୁ ଆମେ ଶାସନ କରୁଛୁ ।

# ନାରୀବେଶରେ ଶାସ୍ତ୍ରୀ

ଏ ପ୍ରସଙ୍ଗରେ ମୁଁ ଆଜ ତୁମକୁ ଗୋଟିଏ ଛୋଟ ଘଟଣା କହିବି । ତୁମେମାନେ ଲାଲ ବାହାଦୂର ଶାସ୍ତ୍ରୀଙ୍କ ନାମ ଶୁଣିଥିବ । ସେ କିଛି ଦିନ ଭାରତର ପ୍ରଧାନ ମନ୍ତ୍ରୀ ଥିଲେ । କିନ୍ତୁ ମୁଁ ଯେଉଁ ସମୟର କଥା କହୁଛି, ସେତେବେଳେ ଭାରତ ସ୍ୱାଧୀନ ହୋଇ ନ ଥାଏ । ଗାନ୍ଧୀଜୀଙ୍କ ନେତୃତ୍ୱରେ ଦେଶସାରା ଚାଲିଥାଏ ମୁକ୍ତିସଂଗ୍ରାମ । ଶାସ୍ତ୍ରୀ ଏହି ସଂଗ୍ରାମରେ ଯୋଗ ଦେଇଥାନ୍ତି ।

ସେତେବେଳେ ସବୁ ସରକାରୀ ଅଫିସ ଉପରେ ଉଡୁଥାଏ ବ୍ରିଟିଶ ପତାକା । ତାକୁ କାଢ଼ିଦେଇ ସେଠାରେ ଆମ ତିରଙ୍ଗା ପତାକା ଉଡ଼ାଇବାକୁ କଂଗ୍ରେସ କର୍ମୀମାନେ ଉଦ୍ୟମ କରୁଥାନ୍ତି । ମାତ୍ର ଇଂରେଜ ସରକାର ତାହା କରାଇ ଦେଉ ନ ଥାଏ । ପୋଲିସ ପଠାଇ ସେମାନଙ୍କୁ ଗିରଫ କରୁଥାଏ ଏବଂ ଆବଶ୍ୟକ ପଡ଼ିଲେ ଲାଠି ଓ ଗୁଳି ଚଳାଇ ଜବତ କରୁଥାଏ ।

ଆଲ୍ଲାହାବାଦର କ୍ଲକ୍ ଟାୱାର ଉପରେ ତିରଙ୍ଗା ପତାକା ଉଡ଼ାଇବାକୁ ଦଳେ ଗାନ୍ଧୀଟୋପିଧାରୀ କଂଗ୍ରେସ କର୍ମୀ ଦିନେ ମନସ୍ଥ କଲେ । ପୋଲିସ ସେ କଥା ପୂର୍ବରୁ ଜାଣିପାରି ସତର୍କ ହୋଇଗଲା । ଟାୱାର ଚାରିପଟେ କଡ଼ା ପୋଲିସ ପହରାର ବ୍ୟବସ୍ଥା କରାଗଲା । କେହି ଯେପରି ଟାୱାର ଉପରକୁ ଯାଇ ତିରଙ୍ଗା ପତାକା ନ ଉଡ଼ାନ୍ତି, ତାହା ଦେଖିବାକୁ ସେମାନେ ଜଗିରହିଲେ ।

କିନ୍ତୁ କ୍ଲକ୍ ଟାୱାର ଆଲ୍ଲାହାବାଦର ଏକ ଦର୍ଶନୀୟ ସ୍ଥାନ । ପର୍ଯ୍ୟଟକମାନେ ପ୍ରାୟ ପ୍ରତିଦିନ ସେଠାକୁ ଆସନ୍ତି ଦେଖିବା ପାଇଁ । ତେଣୁ ସେମାନଙ୍କ ଯିବା ପାଇଁ ବାଟ ବନ୍ଦ ନ ଥିଲା । କେବଳ ଯେଉଁ ଗାନ୍ଧୀ ଟୋପିବାଲା ସ୍ୱେଚ୍ଛାସେବକ ଓ ଯୁବକଙ୍କୁ ପୋଲିସ ସନ୍ଦେହ

କରୁଥିଲେ ସେମାନଙ୍କୁ ଘୁଣ୍ଟ୍ତ ନ ଥିଲେ । ଆବଶ୍ୟକ ହେଲେ ଲାଠି ମାଡ଼ ଦେଇ ଘଉଡ଼ାଇ ଦେଉଥିଲେ ।

ଏହାପରେ କ୍ରମାଗତ କେତେ ଦିନ ଘୁଲବାପରେ ଦିନେ ଗୋଟିଏ ଘୋଡ଼ାଗାଡ଼ି ଆସି ସେଠାରେ ପହଞ୍ଚିଲା । ଗାଡ଼ିର ଝରକା ବନ୍ଦ ଥିଲା । ଗାଡ଼ିଟି ସିଧା ଯାଇ ପାହାଚ ତଳକୁ ଲାଗିଲା । ତା ଭିତରୁ ଜଣେ ବୁର୍ଖାପିନ୍ଧା ମହିଳା ବାହାରି ଟାୱାର ଭିତରକୁ ଗଲେ । ତାଙ୍କୁ ଜଣେ ପର୍ଯ୍ୟଟକ ଭାବି ପୋଲିସ ବାଧା ଦେଲେ ନାହିଁ । କିନ୍ତୁ କେତେ ସମୟପରେ ଦେଖାଗଲା ଟାୱାର ଉପରେ ତିରଙ୍ଗା ପତାକା ଉଡ଼ୁଛି । ଜଗୁଆଳ ପୋଲିସମାନେ ବିଚଳିତ ହୋଇ ପଡ଼ିଲେ । ବାରବର୍ଷର ତପସ୍ୟା ଶୁଖୁଆ ପୋଡ଼ାରେ ଗଲା କି !

ମାତ୍ର କୌଣସି ଅନୁସନ୍ଧାନ ଆବଶ୍ୟକ ପଡ଼ିଲା ନାହିଁ । ସଙ୍ଗେ ସଙ୍ଗେ ଜଣେ ଖଦଡ଼ ଧୋତିପିନ୍ଧା ଲୋକ ଆସି କହିଲା, "ବ୍ୟସ୍ତ ହୁଅନା, ମୁଁ ସେହି ପତାକା ଉଡ଼ାଇଛି ।" ସାଙ୍ଗେ ସାଙ୍ଗେ ପୋଲିସ ତାଙ୍କୁ ଗିରଫ କରି ହାଜତକୁ ନେଇଗଲେ । ସେତିକିବେଳେ ଜଣା-ପଡ଼ିଲା ଯେ ସେ ହେଉଛନ୍ତି ଲାଲବାହାଦୁର ଶାସ୍ତ୍ରୀ । ମହିଳା ବେଶ ଧରି ତିରଙ୍ଗା ପତାକା ଉଡ଼ାଇବାକୁ ଯାଇଥିଲେ ।

ସେଦିନ ଅବଶ୍ୟ କ୍ଳକ୍ ଟାୱାର ଉପରେ ଆମ ତିରଙ୍ଗା ପତାକା ବେଶି ସମୟ ଉଡ଼ିପାରିଲା ନାହିଁ । ଦୁଇ ତିନ ମିନଟପରେ ପୋଲିସ ଲୋକମାନେ ତାକୁ କାଢ଼ି ଆଣି ପୁଣି ବ୍ରିଟିଶ ପତାକା ପୋତିଲେ । କିନ୍ତୁ ସେତିକି ସମୟ ପାଇଁ ବହୁ କଂଗ୍ରେସକର୍ମୀଙ୍କୁ ଲାଠିମାଡ଼ ସହିବାକୁ ପଡ଼ିଲା ଏବଂ ଶାସ୍ତ୍ରୀଙ୍କୁ ଛଅମାସ ଜେଲ ଦଣ୍ଡ ଭୋଗିବାକୁ ହେଲା ।

ଆଜି କିନ୍ତୁ ସେ ଅବସ୍ଥା ନାହିଁ । ଆମେ ନିର୍ଭୟରେ ଆମ ଜାତୀୟ ପତାକା ଉଡ଼ାଇପାରୁଛୁ ଏବଂ ଆମର ଜାତୀୟ ସଙ୍ଗୀତ

ଗାନ କରିପାରୁଛୁ । ଏଣିକ ଆମେ ଏପରି କାମ କରିବା ଯେପରି ଏହି ସ୍ୱାଧୀନତା କେହି ଆମଠାରୁ ଛଡ଼ାଇ ନେଇ ପାରିବ ନାହିଁ । "ଜୟ ହିନ୍ଦ୍ ।"

ମୁଖ୍ୟ ଅତିଥିଙ୍କ ପରେ ସଭାପତି ତାଙ୍କ ବକ୍ତୃତା ଆରମ୍ଭ କଲେ । ସେ କହିଲେ, "ପିଲାମାନେ, ତୁମେ ବର୍ତ୍ତମାନ ଶୁଣିଲ ସ୍ୱାଧୀନତା ପାଇବାପାଇଁ ଭାରତବାସୀଙ୍କୁ କେତେ କଷ୍ଟ ସହିବାକୁ ପଡ଼ିଛି । ସ୍ୱାଧୀନତା ସଂଗ୍ରାମ ଦୀର୍ଘ କାଳ ଧରି ଚାଲିଥିଲା । ତୁମ୍ଭେମାନେ ସେତେବେଳେ ଜନ୍ମ ହୋଇ ନ ଥିଲ । ତେଣୁ ସବୁ ଘଟଣା ଜାଣିବା ତୁମ ପକ୍ଷରେ ସମ୍ଭବ ନୁହେଁ । କିନ୍ତୁ ତୁମର ତାହା ଜାଣିବା ଉଚିତ । ମନୁଷ୍ୟ ଯେଉଁ ପଦାର୍ଥକୁ ଯେତିକି କଷ୍ଟରେ ପାଏ, ତାକୁ ସେତିକି ମୂଲ୍ୟବାନ ମନେ କରେ । ସ୍ୱାଧୀନତା ସେହିପରି ଜିନିଷ । ଆମେ ଯେ ତାକୁ ବହୁ କଷ୍ଟରେ ଲାଭ କରିଛୁ, ଏହି ପତାକା ତାର ସାକ୍ଷ୍ୟ ଦେଉଛି ।

ଏହା ପଛରେ ଯେତେ ଦୁଃଖ କଷ୍ଟର କାହାଣୀ ଅଛି, ତାହା କହି ବସିଲେ ମାସ ମାସ ବିତିଯିବ । ତାହା ଗୋଟିଏ ସ୍ଥାନର କି ଗୋଟିଏ ଦିନର କାହାଣୀ ନୁହେଁ, ସାରା ଭାରତବର୍ଷର କାହାଣୀ, କୋଟି କୋଟି ଲୋକଙ୍କର କାହାଣୀ । ମୁଁ ଦୁଇ ତିନୋଟି ମାତ୍ର ଘଟଣା କହିବି, କାରଣ ଆଜି ଛୁଟି ଦିନରେ ମୁଁ ତୁମକୁ ବେଶି ସମୟ ଅଟକାଇ ରଖିବାକୁ ଚାହେଁନା ।

## ନାଗପୁର ପତାକା ସତ୍ୟାଗ୍ରହ

ପ୍ରଥମେ କହୁଛି ନାଗପୁର ପତାକା ସତ୍ୟାଗ୍ରହ କଥା । ୧୯୨୩ ମସିହା ମେ ପହିଲା ଦିନ କେତେକ କଂଗ୍ରେସ କର୍ମୀ ଜାତୀୟ ପତାକା ଧରି ସହର ଭିତରେ ଶୋଭାଯାତ୍ରାରେ ଯାଉଥିଲାବେଳେ ପୋଲିସ

୧୪୪ ଧାରା ଜାରି କରି ସେମାନଙ୍କୁ ବାଧା ଦେଲା । କର୍ମୀମାନେ କହିଲେ ଯେ ଜାତୀୟ ପତାକା ଧରି ଯେ କୌଣସି ସ୍ଥାନକୁ ଯିବାର ସେମାନଙ୍କର ପୂର୍ଣ୍ଣ ଅଧିକାର ଅଛି । ପୁଲିସ କାହାର କଥା ନ ଶୁଣି ସେମାନଙ୍କୁ ଗିରଫ କଲା । ବିଚାରରେ ସେମାନେ ଜେଲ ଦଣ୍ଡ ପାଇଲେ । ଏହି ଘଟଣାରୁ ଆରମ୍ଭ ହେଲା ବ୍ୟାପକ ସତ୍ୟାଗ୍ରହ ।

ନିଖିଳ ଭାରତ କଂଗ୍ରେସର ନେତାମାନେ ସ୍ୱେଚ୍ଛାସେବୀମାନଙ୍କୁ ସମର୍ଥନ ଜଣାଇ ପ୍ରସ୍ତାବ କଲେ ଯେ ଜୁଲାଇ ୧୮ ତାରିଖକୁ ସମଗ୍ର ଦେଶରେ ପତାକା ଦିବସ ରୂପେ ପାଳନ କରାଯିବ । ଆନ୍ଦୋଳନକୁ ଦେଶବ୍ୟାପୀ କରିବାର କାରଣ ମଧ୍ୟ ଥିଲା । ଏଥି ମଧ୍ୟରେ ଯମୁନାଲାଲ ବଜାଜଙ୍କୁ ଗିରଫ କରାଯାଇ ତାଙ୍କୁ ତିନି ହଜାର ଟଙ୍କା ଜୋରିମାନା କରାଯାଇଥାଏ । ତାହା ଆଦାୟ ନ ହେବାରୁ ତାଙ୍କ ମଟର ଗାଡ଼ି ଜବତ କରି ନିଲାମ କରାଗଲା, ମାତ୍ର ନାଗପୁର ସହରରେ କେହି ନିଲାମ ଧରିଲେ ନାହିଁ । ସରକାର ତାକୁ କାଥିଆବାଡ଼ ନେଇ ବିକ୍ରିକଲେ ।



ଏହି ଘଟଣା ପରେ ପରେ ସତ୍ୟାଗ୍ରହ ତୀବ୍ର ହୋଇ ଉଠିଲା । ସମଗ୍ର ଭାରତରୁ ଦଳ ଦଳ କର୍ମୀ ଆସି ନାଗପୁର ସତ୍ୟାଗ୍ରହରେ ଯୋଗ ଦେଲେ । ଏହାର ପରିଚାଳନା ଦାୟିତ୍ୱରେ ରହିଥିଲେ ବଲ୍ଲଭଭାଇ ପଟେଲ । ସରକାର କହୁଥାନ୍ତି—ଅନୁମତି ନ ନେଇ ଶୋଭାଯାତ୍ରା ଯାଇପାରିବ ନାହିଁ; କଂଗ୍ରେସ କହୁଥାଏ—ଯେ କୌଣସି

ସାଧାରଣ ରାସ୍ତାରେ ବିନା ବାଧାରେ ଚାଲିବାର ଅଧିକାର ଲୋକଙ୍କର ଅଛି । ସତ୍ୟାଗ୍ରହ ପ୍ରତି ସମଗ୍ର ଦେଶର ବିପୁଳ ସମର୍ଥନ ଥିବାର ଦେଖି ସରକାର ଟିକିଏ ଶଙ୍କିଗଲେ; ତେଣୁ ଜୁଲାଇ ୧୮ 'ଗାନ୍ଧୀଦିବସ' ଦିନ ପଟେଲ ଭ୍ରାତୃଦ୍ୱୟଙ୍କ ପରିଚାଳନାରେ ଯେଉଁ ବିରାଟ ପତାକା ଶୋଭାଯାତ୍ରା ବାହାରିଲା, ନିଷେଧାଜ୍ଞା ଜାରି ଥିବା ସତ୍ତ୍ୱେ ସରକାର ତାହାକୁ ବାଟ ଛାଡ଼ିଦେଲେ ।

## ଓଡ଼ିଶା କଥା

ତୁମେମାନେ ଓଡ଼ିଶାର ବିଶିଷ୍ଟ କଂଗ୍ରେସ୍ ନେତା ବିଶ୍ୱନାଥ ଦାସଙ୍କ ନାମ ଶୁଣିଥିବ । ସେ ଯେପରି ଦେଶପ୍ରେମୀ, ସେହିପରି ସ୍ୱାଧୀନଚେତା ଥିଲେ । ତାଙ୍କରି ନେତୃତ୍ୱରେ ୧୯୩୭ରେ ଓଡ଼ିଶାର ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଢ଼ାଯାଇଥିଲା । ସେତେବେଳେ ଏ ଦେଶରେ ଇଂରେଜ ସରକାରର କଡ଼ା ଶାସନ ଚାଲୁ ରହିଥିବା ସତ୍ତ୍ୱେ ସେ ତାଙ୍କ ସରକାରି ଗାଡ଼ିରେ ଇଉନିୟନ ଜ୍ୟାକ୍ ନ ଉଡ଼ାଇ ତିରଙ୍ଗା ପତାକା ଲଗାଇ ଯିବା ଆସିବା କରୁଥିଲେ । କେବଳ ସେତିକି ନୁହେଁ, ସେ ପୁରୀ ସର୍କିଟ ହାଉସରେ ସରକାରି କାର୍ଯ୍ୟରେ ଥିଲାବେଳେ ସେଠାରେ ମଧ୍ୟ ଏହି ପତାକା ଉଡ଼ୁଥିଲା । ଏ ଘଟଣା ସେ ସମୟରେ ଲୋକଙ୍କ ମନରେ ଖୁବ୍ ଉତ୍ତେଜନା ସୃଷ୍ଟି କରିଥିଲା ।

୧୯୩୧-୩୨ ମସିହାର ଏକ ଘଟଣା । କଟକ ସ୍ୱରାଜ୍ୟାଶ୍ରମ ସେତେବେଳେ ଖାସ ସରକାରୀ ଦଖଲରେ ଥାଏ । ଆଶ୍ରମ ହତାରେ ଥିବା ପତାକା ସ୍ତମ୍ଭଟିକୁ ସରକାର ଅଧେ ଭାଙ୍ଗି ଦେଇଥାନ୍ତି । କଂଗ୍ରେସ ଲୋକମାନେ ଏହା ଦେଖି ସମ୍ଭାଳି ପାରିଲେ ନାହିଁ । ଆଶ୍ରମ ଭିତରେ ପଶି ଜାତୀୟ ପତାକା ଉଡ଼ାଇବାକୁ ସଂକଳ୍ପ କଲେ । ସ୍ଥିର ହେଲା କର୍ମୀମାନେ ଦଳ ଦଳ ହୋଇ ଯିବେ ଏବଂ ପୁଲିସର ବାଧା ନ ମାନି ପତାକା ଉଡ଼ାଇବେ ।

ଏ ସତ୍ୟାଗ୍ରହକୁ ଦମନ କରିବାପାଇଁ କଟକର ଦୁର୍ଦ୍ଧାନ୍ତ ଗୋରା ଏସ୍.ପି. ଲେନ୍ ସଦଳବଳେ ଆଶ୍ରମରେ ଉପସ୍ଥିତ ହେଲେ । ତାଙ୍କ ହାତରେ ଥାଏ ପିତ୍ତଳ ଗୋବମରା ଏକ ଶକ୍ତ ଲଠି । ଗୋଲୋକଚନ୍ଦ୍ର ମହାରଣାଙ୍କ ନେତୃତ୍ୱରେ ପ୍ରଥମ ସତ୍ୟାଗ୍ରହୀ ଦଳ ଯେମିତି ଆଶ୍ରମ କୋଠା ଉପରକୁ ଉଠିଛନ୍ତି, ସେ ସେମାନଙ୍କୁ ଲଠିଗୋବରେ ଭୂଷି ତଳେ ପକାଇ ଦେଉଥାନ୍ତି । ଅନ୍ୟ ପୁଲିସମାନେ ସେମାନଙ୍କୁ ଟେକି ଦୂରକୁ ଫୋପାଡ଼ି ଦେଉଥାନ୍ତି ।

ଦଳ ଦଳ ହୋଇ ପତାକାଧାରୀ କର୍ମୀ ଏହିପରି ଲଠିମାଡ଼ ଓ କଚଡ଼ା ଖାଇ ଗୁରୁତର ଭାବରେ ଆହତ ଏବଂ ରକ୍ତାକ୍ତ ହୋଇ-ଥିଲେ । କେତେକଙ୍କୁ ଜେଲରେ ଭର୍ତ୍ତି କରାଗଲା । ଚତୁର୍ଥ ଦଳରେ ଥିଲେ ବୈକୁଣ୍ଠନାଥ ମହାନ୍ତି । ସେ କୌଶଳକ୍ରମେ ଲୁଚିକରି ଆଶ୍ରମ ଉପରେ ପତାକା ଉଡ଼ାଇବାକୁ ଯାଉଥିଲାବେଳେ ଲେନ୍ ସାହେବ ତାଙ୍କୁ ଧରାଇ ଆଣିଲେ । ତାଙ୍କ ନିର୍ଦ୍ଦେଶରେ ଜଣେ ପୋଲିସ ସର୍ଜନ୍ ମୁନରେ ତାଙ୍କୁ ଏପରି ଭୂଷିଦେଲା ଯେ ତାହା ତାଙ୍କ ବାଁ କାଖବାଟେ ପଶି ପିଠିବାଟେ ବାହାରିପଡ଼ିଲା । ତଥାପି ସେତେ-ବେଳ ପର୍ଯ୍ୟନ୍ତ ସେ ପତାକାକୁ ଜାକି ଧରିଥିଲେ । ସେ ଅଚେତ ହୋଇ ପଡ଼ିଯିବାପରେ ତାଙ୍କୁ ଡାକ୍ତରଖାନାକୁ ନିଆଯାଇ ହିଆଗଲା । ତିନ ଚାରିମାସ ପରେ ସେ ଆରୋଗ୍ୟ ଲାଭ କଲେ ।

## କଉଲ୍ ଷ୍ଟେସନରେ

ଧରାପତି କହିଲେ, "ମୁଁ ବୈକୁଣ୍ଠବାବୁଙ୍କଠାରୁ ଏ ଘଟଣା ଶୁଣିଛି । ଏହା ବର୍ଣ୍ଣନା କଲାବେଳେ ତାଙ୍କ ଆଖି ଛଳଛଳ ହୋଇ ଯାଉଥିଲା । ସେ ତ୍ରିରଙ୍ଗ ପତାକାର ଆଉ ଏକ କାହାଣୀ କହୁଥିଲେ । ୧୯୩୨ ମସିହାରେ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସମେତ

ପ୍ରାୟ ଷାଠିଏ ଜଣ ରାଜନୈତିକ ବନ୍ଦୀ କଟକ ଜେଲରୁ ହଜାରିବାଗ ପାଟନା ଜେଲକୁ ସ୍ଥାନାନ୍ତରିତ ହେଉଥାନ୍ତି । କଟକ ଷ୍ଟେସନରେ ଗାଡ଼ି ଲାଗିଲା । ବନ୍ଦୀମାନେ ଦେଖିଲେ ପ୍ଲାଟଫର୍ମରେ ଦଳେ ଟମି (ଗୋରା ସୈନ୍ୟ) ମଦ ପିଇ ଆମୋଦ କରୁଛନ୍ତି । ସେମାନଙ୍କୁ ଶୁଣାଇ କର୍ମୀମାନେ ପାଟିକରି ଉଠିଲେ 'Up up National Flag, Down Down Union Jack !'

ଏହା କି ଗୋରାମାନଙ୍କର ସହ୍ୟ ହୁଏ ? କ୍ରୋଧାନ୍ଧ ହୋଇ ସେମାନେ କଂଗ୍ରେସ ବନ୍ଦୀମାନଙ୍କ ଉପରକୁ ମଦବୋତଲ ଫିଙ୍ଗିଲେ ଏବଂ କଦର୍ଯ୍ୟ ଭାଷାରେ ତିରସ୍କାର କଲେ । ବନ୍ଦୀମାନଙ୍କ ସାଙ୍ଗରେ ଭାରପ୍ରାପ୍ତ ପୋଲିସ ଅଫିସର ରୂପେ ଯାଉଥାନ୍ତି ଗୋକୁଳାନନ୍ଦ ମହାନ୍ତି । ଟମିମାନଙ୍କର ବ୍ୟବହାର ତାଙ୍କୁ ଅସହ୍ୟ ବୋଧହେଲା । ସେ ଉତ୍ତେଜିତ ସ୍ୱରରେ ସେମାନଙ୍କୁ କହିଲେ, "ଏମାନେ ଚୋର ତସ୍କର ନୁହନ୍ତି, ରାଜନୈତିକ ବନ୍ଦୀ । ଜନ୍ମଭୂମିର ମୁକ୍ତି ପାଇଁ ଲଢ଼ୁଛନ୍ତି । ଏମାନଙ୍କ ପ୍ରତି ତୁମର ଏପରି ଆଚରଣକୁ ମୁଁ କ୍ଷମା ଦେଇପାରେ ନା ।"

ତାଙ୍କ ଧମକରେ ଟମିମାନଙ୍କ ରାଗ ଥଣ୍ଡା ପଡ଼ିଗଲା । ସେମାନେ କ୍ଷମା ମାଗି ଶୃଙ୍ଖଳିତ ଭାବରେ ସେଠାରୁ ଚାଲିଗଲେ ।

ଏହିପରି ବହୁତ ଘଟଣା ଏ ପତାକା ପାଇଁ ଘଟିଯାଇଛି । ଆମ ସ୍ୱାଧୀନତା ସଂଗ୍ରାମର ଇତିହାସ ପଢ଼ିଲେ ତୁମେ ସେ ସବୁ ଜାଣିପାରିବ । ଜୟ ହିନ୍ଦ୍ ।"

ସଭାକାର୍ଯ୍ୟ ଶେଷ ହେବାରୁ ପିଲାମାନଙ୍କ ସାଙ୍ଗରେ ମିଷ୍ଟାନ୍ନ ଖାଇ ସାର୍ ଧାପକ ଓ ଜୁଲି ଘରକୁ ଫେରିଲେ ।



# ଅଗଷ୍ଟ ବିପ୍ଳବରେ ଜାତୀୟ ପତାକା

ସନ୍ଧ୍ୟାବେଳେ ପ୍ରାର୍ଥନା ବୋଲି ସାରି ପାଠକ ପଢ଼ିବାକୁ ବସିଲି । ଜୁଲି ଆସିବା ମାତ୍ରେ ମୁଁ ତାକୁ କହିଲି, "ଆଜି ଆମର ଗୋଟିଏ ନୂଆ ଇଂରାଜି କବିତା ପଢ଼ାଗଲା । ଅତି ସୁନ୍ଦର ବିଷୟଟିଏ । ଶୁଣିବୁ କି?"

"ଗପ ହୋଇଥିଲେ ଶୁଣିବି," ଜୁଲି କହିଲା ।

"ହଁ, ଗପଟିଏ । ସେଦିନ ଯେଉଁ ଜାତୀୟ ପତାକା ବିଷୟରେ ସଭାପତି ଓ ମୁଖ୍ୟ ଅତିଥି ବକ୍ତୃତା ଦେଉଥିଲେ, ସେହି ବିଷୟ; କିନ୍ତୁ ଅନ୍ୟ ଦେଶର କଥା । ଶୁଣ୍ ।

## ଗୋଟିଏ ବିଦେଶୀୟ ଗଳ୍ପ

କ୍ରୀତଦାସ ପ୍ରଥା ପୂର୍ବପରି ରହିବ କି ଉଠାଇ ଦିଆଯିବ—ଏହି ପ୍ରଶ୍ନ ନେଇ ଆମେରିକାର ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳ ମଧ୍ୟରେ ଗୃହଯୁଦ୍ଧ ଲାଗିଯାଇଥାଏ । ଗୋଟିଏ ଯୁଦ୍ଧରେ ଜୟଲାଭ କରି ଦକ୍ଷିଣାଞ୍ଚଳ ସେନାପତି ଷ୍ଟୋନଓ୍ୱାଲ ଜ୍ୟାକ୍‌ସନ୍ ଉତ୍ତରାଞ୍ଚଳର ଫ୍ରେଡରିକ୍ ଟାଉନ ମଧ୍ୟରେ ପ୍ରବେଶ କରୁଥାନ୍ତି । ତାଙ୍କ ସୈନ୍ୟମାନେ ଯେତେବେଳେ ସହରରେ ପଶିଲେ, ଲୋକଙ୍କ ମନରେ ଆତଙ୍କ ଖେଳିଗଲା । ସେମାନେ ତରତର ହୋଇ ନିଜ ନିଜ ଘର ଉପରୁ ଜାତୀୟ ପତାକାମାନ କାଢ଼ି ନେଇଗଲେ ।

ବିଜୟୀ ସେନାପତି ଜ୍ୟାକସନ୍ ଆଗେ ଆଗେ ସଦର୍ପରେ ଦୁଇ ପାଖକୁ ଚାହିଁ ଚାହିଁ ଚାଲିଥାନ୍ତି । ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା ଗୋଟିଏ କୋଠା ଘରର ଝରକା ଉପରେ । ପତାକାଟିଏ

ଫରଫର ହୋଇ ଉଡ଼ୁଛି ! ପାଦ ତାଙ୍କର ସେଇଠି ଅଟକିଗଲା । ସେ ପତାକାକୁ ଲକ୍ଷ୍ୟ କରି ଜଣେ ସୈନିକକୁ ଆଦେଶ ଦେଲେ—"ଚଲାଅ ଗୁଳି ।"

ସଙ୍ଗେ ସଙ୍ଗେ ବନ୍ଧୁକ ଗର୍ଜି ଉଠିଲା । ଗୁଳି ବାଜି ଝରକାର କାଚ ଏବଂ ପତାକା ଠିକ୍ ଠିକ୍ ହୋଇଗଲା । ଠିକ୍ ସେତିକିବେଳେ ନବେ ବର୍ଷର ବୁଢ଼ା ବାର୍‌ବାରା ଫ୍ରିଚୀ ସେ ଭଙ୍ଗା ଝରକା ନିକଟକୁ ଆସି ଛିଣ୍ଡା ପତାକାଟିକୁ ଧରିନେଲେ ଏବଂ ବାହାରକୁ ଝୁଙ୍କି ପଡ଼ି ପତାକାଟି ହଲାଇ ହଲାଇ କହିଲେ—

"ମାରିବାକୁ ଯଦି ମନାସୁନ୍ତି ତୁମେ
କର ମୋ ମଥାକୁ ଗୁଳି,
କିନ୍ତୁ ଏ ତୁମର ଦେଶର ପତାକା
ନ ଛୁଅ ଏହାକୁ ଦଳି ।"

ବୁଢ଼ୀଙ୍କର ନିର୍ଭୀକତା ଏବଂ ଦେଶପ୍ରୀତି ଦେଖି ସେନାପତି ଏତେ ଅଭିଭୂତ ହୋଇପଡ଼ିଲେ ଯେ ସୈନ୍ୟମାନଙ୍କୁ କହିଲେ, "ଯେ ଏ ବୃଦ୍ଧା ମହିଳାଙ୍କର କେଶକୁ ସୁଦ୍ଧା ଆଘାତ କରିବ, ମୁଁ ତାକୁ କୁକୁର ପରି ମାରିଦେବି । ଚାଲ, ଆଗେଇ ଚାଲ ।"

ସେଦିନ ସନ୍ଧ୍ୟାଯାଏ ଶତ୍ରୁ ସୈନ୍ୟମାନେ ସେ ରାସ୍ତାରେ ଦଳ ଦଳ ହୋଇ ମାର୍ଚ୍ଚ କରିଚାଲିଲେ; ଅଥଚ ସେ ଛିଣ୍ଡା କାଗଜର ପତାକାଟି ଭଙ୍ଗା ଝରକାରେ ସେହିପରି ଉଡ଼ୁଥାଏ ।"

ଗପଟି ଶେଷ କରି ଦୀପକ ପଚାରିଲା, "କେମିତି ଲାଗିଲା ?"

"ବଢ଼ିଆ ଗପଟିଏ !" ଉତ୍ତର ଦେଲା ଜୁଲି ।

ପାଖ ଘରେ ଦୀପକର ବାପା ନିରଂଜନବାବୁ ପିଲାଙ୍କ କଥାବାର୍ତ୍ତା ଶୁଣୁଥିଲେ । ସେ ଜଣେ ଝାଣ୍ଡୁଆ ଦେଶପ୍ରେମୀ ଲୋକ ।

ସ୍ୱାଧୀନତା ସଂଗ୍ରାମର ଅନେକ କଥା ତାଙ୍କୁ ଜଣା । ଜାତୀୟ ପତାକା ପ୍ରତି ପିଲାଙ୍କ ଆଗ୍ରହ ଲକ୍ଷ୍ୟ କରି ସେ ପଢ଼ାଘରକୁ ଫେରି ଆସି ଶିକ୍ଷକଙ୍କୁ କହିଲେ, "ବାର୍‌ବାର୍ ଫେରି ଚାଲି ଅବଶ୍ୟ ଭଲ ବିଷୟ ଟିଏ । ଜାତୀୟ ପତାକାର ସମ୍ମାନ ଯେ ଜୀବନଠାରୁ ବଡ଼ ଏହି ଶିକ୍ଷା ସେଥିରୁ ମିଳେ । କିନ୍ତୁ ଏହି ପତାକା ବିଷୟରେ ବହୁ ରୋମାଞ୍ଚକର ଘଟଣା ଭାରତର ମୁକ୍ତି ସଂଗ୍ରାମବେଳେ ଘଟିଯାଇଛି । ସେଥିରୁ କେତୋଟି କହୁଛି ଶୁଣ ।



ତୁମେମାନେ ୧୯୪୨ ମସିହାର 'ଭାରତ ଛାଡ଼' ଆନ୍ଦୋଳନ କଥା ପଢ଼ିଥିବ । ତାକୁ 'ଅଗଷ୍ଟ ବିପ୍ଳବ' ମଧ୍ୟ କୁହାଯାଏ । ଇଂରେଜ ସରକାର ସଙ୍ଗେ ସମସ୍ତ ଆଲୋଚନା ବ୍ୟର୍ଥ ହେବା ପରେ ୧୯୪୨

ମସିହା ଅଗଷ୍ଟ ୮ ତାରିଖ ଦିନ ବମ୍ବେରେ ନିଖିଳ ଭାରତ କଂଗ୍ରେସ 'ଭାରତ ଛାଡ଼' ପ୍ରସ୍ତାବ ଗ୍ରହଣ କଲେ । ଏହି ପ୍ରସ୍ତାବରେ ଇଂରେଜ ସରକାରଙ୍କୁ ଅବିଳମ୍ବେ ଭାରତ ଛାଡ଼ି ଚାଲିଯିବାକୁ କୁହାଯାଇଥିଲା । ଠିକ୍ ଏହାର ପରଦିନ ବ୍ରିଟିଶ ସରକାର କଂଗ୍ରେସକୁ ବେଆଇନ ଅନୁଷ୍ଠାନ ଘୋଷଣା କରି ଏକ ସଙ୍ଗେ ମହାତ୍ମା ଗାନ୍ଧୀ, ଜବାହାରଲାଲ ନେହେରୁ, ଆବୁଲ କାଲାମ ଆଜାଦ ପ୍ରଭୃତି ବଡ଼ ବଡ଼ ନେତା-ମାନଙ୍କୁ କାରାରୁଦ୍ଧ କଲେ । ଏହା ପରେ ପରେ ସାରା ଭାରତରେ ବିପ୍ଳବର ନିଆଁ ଜଳି ଉଠିଲା । ଉତ୍ତ୍ୟକ୍ତ ଜନତା ପୋଲିସର ଲାଠିମାଡ଼ ଓ ଗୁଳିକୁ ଭ୍ରୂକ୍ଷେପ ନ କରି ଦଳ ଦଳ ହୋଇ ସରକାରି କଳକୁ ଧ୍ୱଂସ କରିବାରେ ଲାଗିଲେ । ବନ୍ଦୀମାନଙ୍କଦ୍ୱାରା ଜେଲଖାନା-ସବୁ ଭର୍ତ୍ତି ହୋଇଗଲା ।

## କନକଲତା ବଡ଼ୁଆ

ଶୁଣିଆଡ଼େ ଯେତେବେଳେ ଏହିପରି ଗଣବିକ୍ଷୋଭ ଚାଲିଥାଏ, ଭାରତର ମହିଳାମାନେ ଚୁପ୍ ହୋଇ ବସି ନ ଥିଲେ । ସ୍ୱାଧୀନତା ପାଇଁ ସେମାନେ ଯେଉଁ ରକ୍ତ ଦେଇଥିଲେ, ତାର ସୁଫଳ ଆଜ ଆମେ ଭୋଗ କରୁଛୁ । ୧୯୪୨ ସେପ୍ଟେମ୍ବର ୨୦ ତାରିଖର ଗୋଟିଏ ଘଟଣା ମୁଁ କହୁଛି ଶୁଣ । ଆସାମର ଦାରଙ୍ଗ ଜିଲ୍ଲା ଗୋ'ପୁର ଥାନା ଉପରେ ଜାତୀୟ ପତାକା ଉଡ଼ାଇବାକୁ ଏକ ବିରାଟ ଶୋଭାଯାତ୍ରା ବାହାରିଥାଏ । ଚଉଦ ପନ୍ଦର ବର୍ଷର ବାଳିକା କନକଲତା ବଡ଼ୁଆ ପଚ୍ଛୁଆରର ନେତୃତ୍ୱ ନେଇ ଆଗେ ଆଗେ ଚାଲିଥାନ୍ତି । ତାଙ୍କ ହାତରେ ଥାଏ ତିରଙ୍ଗା ପତାକା । ଥାନା ହତାରେ ପଶିବାମାତ୍ରେ ଜଣେ ପୋଲିସ ଅଫିସର ତାଙ୍କ ଆଗକୁ ଆସି କହିଲା, "ଆଉ ପାଦେ ଆଗେଇବାକୁ ଦିଆଯିବ ନାହିଁ ।"

କନକଲତା ଦମ୍ଭର ସହିତ ଉତ୍ତର ଦେଲେ, "ଥାନାଟା ଗଣ୍ତନ୍ତ୍ର-ଲୋକଙ୍କର । ସରକାରୀ କର୍ମଚାରୀମାନେ ଜନତାର ସେବକ ।"

ଅଫିସର ତାଙ୍କୁ ସଙ୍ଗିନ୍ ଓ ପିସ୍ତଲ ଦେଖାଇଲେ । କନକଲତା ତିଳେମାତ୍ର ଭୟଭୀତ ନ ହୋଇ କହିଲେ, "ତୁମ କର୍ତ୍ତବ୍ୟ ତୁମେ କର । ଜୀବନ ଯାଉ ପଛେ, ମୋ କର୍ତ୍ତବ୍ୟ ମୁଁ କରିବ ।" ପିସ୍ତଲରୁ ଗୁଳି ଫୁଟିଲା । କନକ ଟଳିପଡ଼ିଲେ । ମୁକୁନ୍ଦ ନାମକ ଜଣେ ଯୁବକ ତାଙ୍କ ରକ୍ତାକ୍ତ ହାତରୁ ଜାତୀୟ ପତାକା ଟାଣି ନେଇ ଆଗେଇବାକୁ ଚେଷ୍ଟା କଲାବେଳେ ତାଙ୍କୁ ମଧ୍ୟ ଗୁଳି କରି ମାରି ଦିଆଗଲା । ଏହି ଅବସରରେ ଥାନାର ଅନ୍ୟ ପଟେ ଲୋକମାନେ ପଶିଯାଇ କୋଠା ଉପରେ ଜାତୀୟ ପତାକା ଉଡ଼ାଇଦେଲେ ।

## ଭୋଗେଶ୍ୱରୀ ଫୁକୋନନୀ ଓ ରତ୍ନମାଳା

ଆସାମର ଆଉ ଏକ ଘଟଣାରେ ବୃଦ୍ଧା ଭୋଗେଶ୍ୱରୀ ଓ ତାଙ୍କ ନାତୁଣୀ ରତ୍ନମାଳାଙ୍କ ସହିତ ବହୁ ଲୋକ ଶହୀଦ ହୋଇଥିଲେ । ବରହମପୁର କଂଗ୍ରେସ ଭବନ ସେତେବେଳେ ପୋଲିସ ଦଖଲରେ ଥାଏ । ସେପ୍ଟେମ୍ବର ୧୬ ତାରିଖରେ ସହରର ଲୋକମାନେ ସେଠାରେ ଏକ ଭୋଜର ଆୟୋଜନ କରୁଥାନ୍ତି । ତେଣୁ ଅନେକ ଲୋକ ସେଠାରେ ରୁଣ୍ଡ ହେଲେ । ସରକାର ସନ୍ଦେହ କଲା ସେମାନେ କିଛି ଗଣ୍ଡଗୋଳ ସୃଷ୍ଟି କରିବେ । ଏହି ଆଶଙ୍କାରେ ସେଠାକୁ ସଶସ୍ତ୍ର ଫଉଜ ପଠାଇଦିଆଗଲା ।

କେତେକ ବାଳିକା ଜାତୀୟ ପତାକା ଧରି ସେହି ସ୍ଥାନକୁ ଯାଉଥିଲେ । ଜଣେ ଗୋରା ସାମରିକ ଅଫିସର ରତ୍ନମାଳା ନାମ୍ନୀ ଏକ ପନ୍ଦର ଷୋଳ ବର୍ଷର ବାଳିକା ହାତରୁ ପତାକା ଛଡ଼ାଇ

ନେବାକୁ ବସିଲ । ରତ୍ନମାଳା ପତାକା ନ ଛାଡ଼ିବାରୁ ସେ ତାକୁ ଧକାଦେଇ ତଳେ ପକାଇଦେଲା । ଏହା ଦେଖି ବାଳକାର ଜେଜେମା ଶ୍ରେଚଗଶ୍ୱଷ ଉକ୍ତ ସାମରିକ ଅଫିସର ପାଖକୁ ଚମକ ଯାଇ ପତାକା କାଠିରେ ତା ମୁହଁକୁ ଭୁଷିଦେଲେ । ଏହ୍ୱ ଅପମାନର ପ୍ରତିଶୋଧ ନେବାକୁ ଗୋରା ସୈନ୍ୟଙ୍କୁ ବେଶି ସମୟ ଲଗିଲ୍ଲ ନାହିଁ । ଗୋଟିଏ ଗୁଳିରେ ସେହ୍ୱ ବୃଦ୍ଧା ରମଣୀଙ୍କର ପ୍ରାଣବାୟୁ ଉଡ଼ିଗଲ୍ଲ ।

ଉତ୍ତ୍ୟକ୍ତ ଜନତା ସମ୍ଭାଳି ନ ପାରି ବାଳକାମାନଙ୍କୁ ରକ୍ଷା କରିବା ଉଦ୍ଦେଶ୍ୟରେ ସୈନ୍ୟଦଳ ପାଖକୁ ମାଡ଼ିଆସିଲେ । କିନ୍ତୁ ସେ ପରିସ୍ଥିତିରେ ନିରସ୍ତ୍ର ଜନତା ବା କଣ କରିପାରିବେ ? ସୈନ୍ୟ-ମାନଙ୍କ ଆଡ଼ୁ ଯେଉଁ ଗୁଳି ବୃଷ୍ଟି ହେଲା, ସେଥିରେ ଅନେକ ଲୋକ ମୃତାହତ ହୋଇ ଭୂଇଁରେ ଲୋଟିଗଲେ ।

## ମାତଙ୍ଗିନୀ ହାଜରା

ଏ ସେଇ ଅଗଷ୍ଟ ବିପ୍ଳବର ଆଉ ଏକ ଗୌରବୋଜ୍ୱଳ ଅଧ୍ୟାୟ । ମେଦିନୀପୁରର ତମଲୁକ ଥାନା ଆଡ଼କୁ ଶୋଭାଯାତ୍ରା ଚାଲିଥାଏ । ବାଟରେ ମିଲିଟାରୀ ପୋଲିସ ବିପ୍ଳବୀମାନଙ୍କୁ ଘଉଡ଼େଇବା ପାଇଁ ଗୁଳି ଫାୟାର୍ କଲେ । ଅଳ୍ପ ସମୟ ପାଇଁ ପଟୁଆର ପଛକୁ ହଟିଗଲା । ସେହ୍ୱ ସମୟରେ ତେର ବର୍ଷର ବାଳକ ଲକ୍ଷ୍ମୀ-ନାରାୟଣ ଆଗେଇ ଯାଇ ଜଣେ ସୈନ୍ୟହାତରୁ ବନ୍ଧୁକ ଛଡ଼ାଇ ଆଣିଲା । ଶାଗୁଣା ମଡ଼କୁ ବେଢ଼ିଲା ପରି ଉତ୍ତକ୍ଷିପ୍ତ ସୈନ୍ୟମାନେ ତାକୁ ଘେରି ଯାଇ ମସ୍ତକ ମାଡ଼ ଦେଲେ । ତାହା ସହ୍ୱ ନ ପାରି ୭୩ ବର୍ଷର ବୃଦ୍ଧା କୃଷକମହିଳା ମାତଙ୍ଗିନୀ ହାଜରା ଜାତୀୟ ପତାକାକୁ ଟେକି ଧରି ସୈନ୍ୟ ଧାଡ଼ି ଆଡ଼କୁ ଆଗେଇଗଲେ ।

ସଙ୍ଗେ ସଙ୍ଗେ ତାଙ୍କ ହାତରେ ବାଜିଲା ଗୁଳି । ତଥାପି ସେ ପତାକାକୁ ଛାଡ଼ିଲେ ନାହିଁ । ଭାରତୀୟ ସୈନ୍ୟମାନଙ୍କୁ ଲକ୍ଷ୍ୟ କରି କହିଲେ, "ତୁମେ ଭାରତୀୟ ହୋଇ ତୁମର ଭାଇ ଭଉଣୀମାନଙ୍କୁ ଗୁଳି କରୁଛ, ଏହା କଣ ଠିକ୍ ହେଉଛି ?" କିନ୍ତୁ ସୈନ୍ୟର ହୃଦୟ ନିର୍ମମ । ମାତଙ୍ଗିନୀଙ୍କୁ ପ୍ରତ୍ୟୁତ୍ତର ମିଳିଲା ଗୁଳିରେ । ଏଥର ତାଙ୍କ କପାଳରେ ଗୁଳି ବାଜିଲା । ସେ ସେଇଠି ଢଳି ପଡ଼ିଲେ । କିନ୍ତୁ ଶେଷପର୍ଯ୍ୟନ୍ତ ସେ ହାତରୁ ଜାତୀୟ ପତାକା ଛାଡ଼ି ନ ଥିଲେ ।

ସେଦିନର ଗୁଳିକାଣ୍ଡରେ ଏହି ବୀରାଙ୍ଗନା ଓ ବାଳକ ଲକ୍ଷ୍ମୀ-ନାରାୟଣ ସମେତ ଅନେକ ଲୋକ ଶହୀଦ ହୋଇଥିଲେ ।

ବିରାଟ ଭାରତବର୍ଷର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଏଭଳି କେତେ ଯେ ଘଟଣା ଘଟିଯାଇଛି, ତାର ଇୟତ୍ତା ନାହିଁ । ବମ୍ବେରେ ଗିରଫ ହେବା ପୂର୍ବରୁ ଗାନ୍ଧୀଜୀଙ୍କର ଶେଷ ନିର୍ଦ୍ଦେଶ ଥିଲା— 'କର ଅବା ମର' । ଜାତି ସେ କଥା ପାଳନ କରିବାକୁ ଭୁଲି ନ ଥିଲା । ତା ନ ହୋଇଥିଲେ ବ୍ରିଟିଶ ସରକାର ଏତେ ଶୀଘ୍ର ଭାରତରୁ ଯାଇ ନ ଥାନ୍ତା ।

## ପାଟନାର ଶହୀଦ ସ୍ତମ୍ଭ

ତୁମେ କେବେ ପାଟନା ଗଲେ ସେକ୍ରେଟାରିଏଟ ଆଗରେ ଏକ ବିରାଟ ଶହୀଦ ସ୍ତମ୍ଭ ଦେଖିପାରିବ । ସେହି ଅଗଷ୍ଟ ବିପ୍ଳବ ସମୟରେ ଜଣ ଜଣ ହୋଇ ସାତଜଣ ଛାତ୍ର ଆମ ଜାତୀୟ ପତାକା ପାଇଁ ସେଠାରେ ଯେପରି ଜୀବନ ଦେଇଥିଲେ, ତାର ସ୍ମୃତି ବହନ କରି ତାହା ସେଠାରେ ଦଣ୍ଡାୟମାନ ରହିଛି ।

ମୁଁ ତ ପୂର୍ବରୁ ତୁମକୁ କହିଛି ବମ୍ବେରେ କଂଗ୍ରେସଦ୍ୱାରା 'ଭାରତ ଛାଡ଼' ପ୍ରସ୍ତାବ ଗୃହୀତ ହେଲା ପରେ ପରେ ସରକାର ସବୁ

ବଡ଼ ବଡ଼ ନେତାଙ୍କୁ ଧରି ନେଇ ଜେଲରେ ବନ୍ଦୀ କରି ରଖିଲା । ବିହାରର ବଡ଼ ନେତା ରାଜେନ୍ଦ୍ର ପ୍ରସାଦ ସେତେବେଳେ ଶ୍ୱାସ-ରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ଥାନ୍ତି । ତଥାପି ତାଙ୍କୁ ଗିରଫ କରାଗଲା । ନେତାମାନେ ଗିରଫ ହେବା ଶୁଣି ସାଧାରଣ ଲୋକେ ଉତ୍ତ୍ୟକ୍ତ ହୋଇଉଠିଲେ । ଅଗଷ୍ଟ ୧୧ ତାରିଖ ଉପରବେଳା ପ୍ରାୟ ୪୦ ହଜାର ଲୋକ ପଟ୍‌ଆର କରି ସେକ୍ରେଟାରିଏଟ ଆଡ଼କୁ ଚାଲିଲେ । ଏ ସମ୍ବାଦ ପାଇବାମାତ୍ରେ ଗୋରା ଓ ଗୁର୍ଖା ଫଉଜ ସହ ବଡ଼ ବଡ଼ ସରକାରୀ ହାକିମ ସେକ୍ରେଟାରିଏଟ୍ ସାମ୍ନାରେ ଜଗିରହିଲେ ।

ଶୋଭାଯାତ୍ରା ପ୍ରଥମେ ଶାନ୍ତିପୂର୍ଣ୍ଣ ରହିଥିଲା । ହାତରେ ଜାତୀୟ ପତାକା ଧରି ଛାତ୍ରମାନେ ଆଗରେ ଥାନ୍ତି । 'ଜୟ ହିନ୍ଦ୍' ଓ 'ଇନକିଲାବ୍ ଜିନ୍ଦାବାଦ୍' ଧ୍ୱନିରେ ଆକାଶ ଫାଟିପଡ଼ୁଥାଏ । ଏହି ସମୟରେ ସେକ୍ରେଟାରିଏଟ୍ ଉପରକୁ ଯାଇ ସେଠାରେ ଜାତୀୟ ପତାକା ଉଡ଼ାଇବାକୁ ଛାତ୍ରମାନେ ଜିଦ୍ ଧରିଲେ । ଜିଲା ମାଜିଷ୍ଟ୍ରେଟ ସେମାନଙ୍କ କଥା ତ ଶୁଣିଲେ ନାହିଁ, ଓଲଟି ଫେରିବାକୁ ଆଦେଶ ଦେଲେ । ମାତ୍ର ତାଙ୍କର ସମସ୍ତ ଧମକ ବିଫଳ ହେଲା । ଛାତ୍ରମାନେ ଆଗେଇବାକୁ ଆରମ୍ଭ କଲେ ।

ରାମକୃଷ୍ଣ ଶର୍ମା ନାମକ ଜଣେ ଛାତ୍ର କୌଶଳରେ ପଶିଯାଇ ଗୋଟିଏ ଛୋଟ ତ୍ରିରଙ୍ଗ ପତାକା ଅଫିସ ଘରଉପରେ ପୋତିଦେଲା । ଦେଖୁ ଦେଖୁ କୌଣସି ବାଧା ନ ମାନି ଛାତ୍ରମାନେ ଆଗେଇବାକୁ ଚେଷ୍ଟା କଲେ । ସେମାନଙ୍କୁ ସଙ୍ଗେ ସଙ୍ଗେ ଗିରଫ କରାଗଲା । ତଥାପି ଅବସ୍ଥା ଶାନ୍ତ ନ ପଡ଼ିବାରୁ ମାଜିଷ୍ଟ୍ରେଟ ଗୁଳି ଚଳାଇବାକୁ ଆଦେଶ ଦେ ଲେ ।



ଜଣ ଜଣ ହୋଇ ପାଞ୍ଚ ଜଣ ଯୁବ ସେଠାରେ ଢଳି ପଡ଼ିଲେ । ଆହତ ହେଲେ ଅନେକ । ସେମାନଙ୍କ ମଧ୍ୟରୁ ଆଉ ଦୁଇଜଣ ଯୁବ ଡାକ୍ତରଖାନାରେ ପ୍ରାଣତ୍ୟାଗ କଲେ ।

ଏହି ବୀଭତ୍ସ ଦମନଲୀଳାର ସମ୍ବାଦ ବିଦ୍ୟୁତ୍‌ବେଗରେ ଚାରିଆଡ଼େ ବ୍ୟାପିଗଲା । ରକ୍ତମାଂସର ଦେହ ଏହା ବରଦାସ୍ତ କରନ୍ତା କିପରି ? ଉତ୍ତ୍ୟକ୍ତ ଜନତା ଏହାର ପ୍ରତିଶୋଧ ନେବା ପାଇଁ ତତ୍ପର ହୋଇ ଉଠିଲେ । ତିନି ଚାରିଦିନ ପର୍ଯ୍ୟନ୍ତ ପାଟନା ଓ ଆଖପାଖ ଅଞ୍ଚଳରେ ଇଂରେଜ ଶାସନର ଚିହ୍ନବର୍ଣ୍ଣ ରହିଲା ନାହିଁ ।

## କୋରାପୁଟର ମାତିଲି ହାଟରେ ପତାକାର ବନ୍ୟା

୧୯୪୨ ଅଗଷ୍ଟ ୨୧ ତାରିଖ । ବିପ୍ଳବୀ ଆଦିବାସୀ ନେତା ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ କୋରାପୁଟ ଜିଲାର ମାତିଲି ହାଟରେ

ସଭା ହେଉଥାଏ । ଶହ ଶହ କର୍ମୀ ହାତରେ ତିରଙ୍ଗା ପତାକା ଧରି ସେଠାରେ ରୁଣ୍ଡ ହୋଇଥାନ୍ତି । ସେଠାରୁ ଅଳ୍ପ ଦୂରରେ ଥାନା । ପୋଲିସ ଆସି ଲକ୍ଷ୍ମଣଙ୍କୁ ଗିରଫ କଲା । ପ୍ରାୟ ଦୁଇ ହଜାର ଲୋକ ପଛୁଆର କରି ତାଙ୍କ ନେତାଙ୍କ ପଛେ ପଛେ ଥାନା ଆଡ଼କୁ ଚାଲିଲେ ।

'ବନ୍ଦେ ମାତରମ୍' ଧ୍ୱନିରେ ଆକାଶ କମ୍ପୁଥାଏ । କେତେକ କର୍ମୀ ଥାନା ଉପରେ ତିରଙ୍ଗା ପତାକା ଉଡ଼ାଇବା ପାଇଁ ଆଗେଇ-ଗଲେ । ଏତିକବେଳେ ଦୁଇ ତିନି ଜଣ ପୋଲିସ ଲକ୍ଷ୍ମଣ ନାୟକଙ୍କୁ ଥାନା ଭିତରକୁ ଭିଡ଼ି ନେଇ ତାଙ୍କୁ ମାଡ଼ ବସିଲେ ଏବଂ ତାଙ୍କ ନିଶରେ ନିଆଁ ଲଗାଇଦେଲେ । ଉତ୍ତ୍ୟକ୍ତ ଜନତାଙ୍କୁ ଘଉଡ଼ାଇବା ପାଇଁ ଚାଲିଲା ଲାଠିମାଡ଼ ଓ ଗୁଳି । ଅନେକ ଲୋକ ମୃତାହତ ହେଲେ । ଦଙ୍ଗାଚକଟାରେ ଜଣେ ଫରେଷ୍ଟ ଗାର୍ଡ଼ର ମୃତ୍ୟୁ ଘଟିଲା ।

ପୁଲିସ ଲକ୍ଷ୍ମଣ ନାୟକଙ୍କ ମୁହଁକୁ ସଙ୍ଗିନ୍ ମୁନରେ ଭୁଷି-ଦେବାରୁ ସେ ସଂଜ୍ଞାହୀନ ହୋଇ ତଳେ ପଡ଼ିଗଲେ । ସେ ମରିଯାଇଛନ୍ତି ଭାବି ଥାନା ଲୋକମାନେ ତାଙ୍କୁ ଘୋଷାରି ନେଇ ନାଳାରେ ଫିଙ୍ଗିଦେଲେ ।

ଥଣ୍ଡା ପବନରେ ଲକ୍ଷ୍ମଣଙ୍କର ଚେତା ଆସିବାରୁ ସେ ଅନ୍ଧାରରେ ବାଟ ଅଣ୍ଡାଳି ଅଣ୍ଡାଳି ସେଇ ରାତିରେ ଜୟପୁର ଚାଲି-ଗଲେ । କର୍ମୀମାନଙ୍କ ସେବାରେ ସେ ସୁସ୍ଥ ହେବାମାତ୍ରେ ତାଙ୍କ ନାଁରେ ମକଦ୍ଦମା ଦାଏର ହେଲା ଯେ ଫରେଷ୍ଟଗାର୍ଡ଼ର ମୃତ୍ୟୁ ପାଇଁ ସେ ଦାୟୀ । ହାଇକୋର୍ଟ ମଧ୍ୟ ତାଙ୍କୁ ଦୋଷୀ ସାବ୍ୟସ୍ତ କରି ରାୟ ଦେଲା—ପୁଲିସର ଲାଠିମାଡ଼ବେଳେ ଲକ୍ଷ୍ମଣ ନାୟକ ଜାତୀୟ ପତାକାକୁ ଟେକି ଧରି ଲୋକଙ୍କୁ ମତାଉଥିଲେ; ସେହି ଦଙ୍ଗାଚକଟା

ଫଳରେ ଫରେଷ୍ଟ ଗାର୍ଡ଼ର ମୃତ୍ୟୁ ଘଟିଲା । ଏହି ଦୋଷରେ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ହୁକୁମ ହେଲା । ୧୯୪୩ ମାର୍ଚ୍ଚ ୨୯ ତାରିଖ ସକାଳେ ଏହି ବୀର ପୁରୁଷଙ୍କୁ ବ୍ରହ୍ମପୁର ଜେଲରେ ଫାଶୀରେ ଝୁଲାଇ ଦିଆଗଲା ।

## ବ୍ରହ୍ମପୁର ଜେଲରେ ଲାଠିମାଡ଼

ଏହି ଘଟଣାର ପରେ ପରେ ଜାତୀୟ ପତାକାକୁ ନେଇ ଏକ ଭୂମୁକ କାଣ୍ଡ ଘଟିଥିଲା ସେହି ବ୍ରହ୍ମପୁର ଜେଲରେ । ଅଗଷ୍ଟ ବିପ୍ଳବରେ ଧରା ହୋଇ ପ୍ରାୟ ୨୫୬ ଜଣ ନେତା ଓ କର୍ମୀ ଭିନ୍ନ ଭିନ୍ନ କ୍ୟାମ୍ପରେ ବନ୍ଦୀ ହୋଇ ରହିଥାନ୍ତି । ଏମାନେ ସମସ୍ତେ ମିଳି ସ୍ଥିର କଲେ ଜାନୁଆରୀ ୨୬ ତାରିଖ ଦିନ ଜେଲ୍ ଭିତରେ ଜାତୀୟ ପତାକା ଉଡ଼ାଇବେ ।

ଏହାର ମୁକାବିଲା ପାଇଁ ସରକାର ପ୍ରସ୍ତୁତ ହୋଇଗଲା । କଲେକ୍ଟର ଆଦେଶ ଦେଲେ ଏହା କଦାପି କରାଇ ଦିଆଯିବ ନାହିଁ । କିନ୍ତୁ ସେ ଜାଣିଥିଲେ ଯେ ବନ୍ଦୀ କଂଗ୍ରେସ ଲୋକମାନେ ତାଙ୍କ କଥା ନ ମାନି ନିଶ୍ଚୟ ପତାକା ଉଡ଼ାଇବେ । ତେଣୁ ସେମାନଙ୍କୁ ଭୟଭୀତ କରାଇବା ଉଦ୍ଦେଶ୍ୟରେ ସେ ଆବଶ୍ୟକ ପଦକ୍ଷେପ ଗ୍ରହଣ କଲେ । ଯେଉଁଠାରେ ବନ୍ଦୀ କଂଗ୍ରେସ ଲୋକମାନେ ପତାକା ଉଡ଼ାଇବାକୁ ସ୍ଥିର କରିଥିଲେ, ସେଠାରେ ସଶସ୍ତ୍ର ପୋଲିସବାହିନୀ ନେଇ ଉପସ୍ଥିତ ହେଲେ । କଲେକ୍ଟର ହାତରେ ଖଣ୍ଡେ ସରୁ ବେତ ଧରିଥାନ୍ତି । ଆଗ ଧାଡ଼ିରେ ଥାନ୍ତି ଲାଠିଧାରୀ ପୋଲିସ, ପଛ ଧାଡ଼ିରେ ବନ୍ଧୁକ ଧରି ଆଉ ଦଳେ ପୋଲିସ୍ ଠିଆ ହୋଇଥାନ୍ତି ।

ପତାକା ଉଡ଼ାଇବାକୁ ପ୍ରସ୍ତୁତ ହେଉଥିବା କଂଗ୍ରେସ କର୍ମୀମାନଙ୍କୁ ଜଣାଇ ଦିଆଗଲା ଯେ ଜାତୀୟ ପତାକା ଉଡ଼ାଇବା

ଏକ ବେଆଇନ କାର୍ଯ୍ୟ । ସରକାର ତାହା କଦାପି କରାଇଦେବେ ନାହିଁ । ଆଇନଭଙ୍ଗ କଲେ ଲାଠିମାଡ଼ ହେବ । ଏହି ସମୟରେ ନବକୃଷ୍ଣ ଚୌଧୁରୀ ସମ୍ମୁଖକୁ ବାହାରି ଆସିଲେ । ଛାତିରୁ କୁର୍ତ୍ତା ଖୋଲି କହିଲେ, "ପ୍ରଥମେ ମତେ ଗୁଳିକର, ତାପରେ ଲାଠି-ଚାର୍ଜ କରିବ ।"

କର୍ମୀମାନଙ୍କ ରକ୍ତ ତାତି ଉଠିଲା । ରବୀନ୍ଦ୍ରମୋହନ ଦାସ ପତାକା ଉଠାଇବାମାତ୍ରେ କଲେକ୍ଟର ତାଙ୍କ କାନ୍ଧକୁ ବେତରେ ଛୁଇଁ ଦେଇ ପୋଲିସକୁ ଲାଠି ଚଳାଇବା ପାଇଁ ଇଙ୍ଗିତ ଦେଲେ । ତାପରେ ଚାଲିଲା ନିର୍ମମ ଲାଠିମାଡ଼ । ସେଥିରେ ମୋଟ ୫୮ ଜଣ ଆହତ ହେଲେ । ବୃଦ୍ଧ ବିଶ୍ୱନାଥ ଦାସ ମଧ୍ୟ ସେଥିରୁ ବାଦ୍ ପଡ଼ି ନ ଥିଲେ ।

ଭାରତର ବିଭିନ୍ନ ପ୍ରାନ୍ତରେ ଏହି ଜାତୀୟ ପତାକାକୁ କେନ୍ଦ୍ର କରି ଏହିପରି ବହୁ ଲାଠିମାଡ଼ ଓ ଗୁଳିକାଣ୍ଡ ଘଟିଯାଇଛି । ଇତିହାସ ପଢ଼ିଲେ ଜାଣିବ ସ୍ୱାଧୀନତା କେହି କାହାକୁ ଯାଚି କରି ଦିଏ ନାହିଁ; ଲଢ଼ି କରି ଏହା ଆଣିବାକୁ ହୁଏ । କବି ବାଞ୍ଛାନିଧି ମହାନ୍ତି ସେହି କଥା କହିଛନ୍ତି ଗୋଟିଏ ଜାତୀୟ ସଙ୍ଗୀତରେ—

'କହ କହ କେଉଁ ଜାତି ପାଇଛି ମୁକତି
କରି ହରି ହାରଗୁହାରି ।
କହ ପାଇଛି କେ ସୁଖ ଲଭିଇଛି ଦୁଃଖ
ମାଗି ମାଗି ପଥ ଭିକାରୀ ।'

ଏ ଲଢ଼େଇରେ ବହୁ ରକ୍ତପାତ ଘଟିଛି, ଅନେକ ଲୋକ ଲାଠିମାଡ଼ ଖାଇଛନ୍ତି, ଜେଲରେ ସଢ଼ିଛନ୍ତି, ଗୁଳିଖାଇ ମରିଛନ୍ତି ଏବଂ ଫାଶୀଖୁଣ୍ଟରେ ଝୁଲିଛନ୍ତି । ବହୁ ଛୋଟ ପିଲା ମଧ୍ୟ ଏହି ବିପ୍ଳବରେ ଝାସ ଦେଇଥିଲେ । ସେମାନଙ୍କୁ କୁହାଯାଉଥିଲା 'ବାନର

ସେନା' । ତାଙ୍କ କଅଁଳ ହାତରେ ଇଂରେଜ ସରକାର ପନ୍ଦର ବେତ ଲେଖାଏଁ ମାଡ଼ ଦେଉଥିଲା । ତଥାପି ସେମାନେ ଗାଇ ବୁଲୁଥିଲେ—

'ତୁମେ ମାର କେତେ ବେତ ମାରିବ
ଦେଶ ଲାଗି ଆମେ ଜୀବନ ଦେଇଛୁ
ତୁମେ କ ଆମକୁ ପାରିବ ?'

ସେତେବେଳର ଉନ୍ମାଦନା ଅବର୍ଣ୍ଣନୀୟ । ଏତିକ ଆନନ୍ଦର କଥା ଯେ ମହାତ୍ମାଙ୍କ ଗାନ୍ଧିଙ୍କ ବିପ୍ଳବବେଳେ ଓଡ଼ିଶା ପଛେଇ ଯାଇ ନ ଥିଲା । ବଡ଼ ବଡ଼ ନେତାମାନେ ଧରା ହୋଇ ଗଲାପରେ ମଧ୍ୟ ସୁରେନ୍ଦ୍ରନାଥ ଦ୍ୱିବେଦୀ ଏବଂ ଅନ୍ୟ ସଂଗ୍ରାମୀମାନେ ଦକ୍ଷତାର ସହ ବିପ୍ଳବକୁ ଓଡ଼ିଶାରେ ଜ୍ୱଳନ୍ତ ରଖିଥିଲେ ।

ଏ କାହାଣୀ ସରିବା କାହାଣୀ ନୁହେଁ । ତୁମ୍ଭେମାନେ ବଡ଼ ହେଲେ ଆମ ମୁକ୍ତି ସଂଗ୍ରାମର ବହି ସବୁ ଆଣି ପଢ଼ିବ ଏବଂ ଆଉ ଅନେକ କଥା ଜାଣିପାରିବ । ମୁଁ କେବଳ ପତାକା ବିଷୟରେ କେତୋଟି ଘଟଣା କହିଲି । ଏକଥା ଏତିକ ଥାଉ ।"



# ଅଲିମ୍ପିକ୍‌ରେ ଆମ ଜାତୀୟ ପତାକା

ଆଜି ବନେ ନିରଞ୍ଜନବାବୁ ଦୀପକ ଓ ଜୁଲି— ଦୁହିଁଙ୍କୁ ଜାତୀୟ ପତାକା ପ୍ରସଙ୍ଗରେ ଗୋଟିଏ ଗଳ୍ପ କହିବାକୁ ଯାଇ ଆରମ୍ଭ କଲେ—"ପୃଥିବୀରେ ଯେତେଗୁଡ଼ିଏ ଆନ୍ତର୍ଜାତୀୟ ସଂଗଠନ ଅଛି, ସେଥିମଧ୍ୟରେ ମିଳିତ ଜାତିସଂଘ ଓ ବିଶ୍ୱ ଅଲିମ୍ପିକ୍ ସଂସ୍ଥା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରେ । ସ୍ୱାଧୀନ ରାଷ୍ଟ୍ରମାନେ ବଡ଼ ସାନ ନିର୍ବିଶେଷରେ ଏ ସବୁ ଅନୁଷ୍ଠାନରେ ଯୋଗ ଦିଅନ୍ତି ଏବଂ ମିଳିମିଶି କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରନ୍ତି । ଅଲିମ୍ପିକ୍ ପ୍ରତିଯୋଗିତାରେ ସବୁ ରାଷ୍ଟ୍ରଙ୍କୁ ସମାନ ସୁବିଧା ସୁଯୋଗ ଦିଆଯାଏ । ବିଶ୍ୱ ଅଲିମ୍ପିକ୍ ସଂସ୍ଥାର ନିଜର ଏକ ସ୍ୱତନ୍ତ୍ର ପତାକା ଅଛି । ତାହା ସେଠାରେ ଉତ୍ତୋଳନ କରାଯାଏ । ତା ଛଡ଼ା ପ୍ରତିଯୋଗିତାରେ ଭାଗ ନେଇଥିବା ପ୍ରତ୍ୟେକ ସ୍ୱାଧୀନ ରାଷ୍ଟ୍ର ନିଜ ନିଜ ଆସ୍ଥାନ ପାଖରେ ସେ ଦେଶର ଜାତୀୟ ପତାକା ଉଡ଼ାଇବାର ବିଧି ଅଛି । କିନ୍ତୁ ଭାରତ ପରାଧୀନ ଥିଲାବେଳେ ଥରେ ଅଲିମ୍ପିକ୍ ଉତ୍ସବରେ କିପରି ତାର ଜାତୀୟ ପତାକା ଉଡ଼ାଇଥିଲା, ତାହା ଦେଶପ୍ରେମର ଏକ ଜ୍ୱଳନ୍ତ ଉଦାହରଣ ହୋଇ ରହିଛି ।

"ଲାହୋର ସେତେବେଳେ ଭାରତବର୍ଷର ଅନ୍ତର୍ଗତ ଥାଏ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ପରେ ସିନା ପାକିସ୍ତାନ ଭାରତରୁ ଅଲଗା ହୋଇଗଲା, ମାତ୍ର ତା ପୂର୍ବରୁ ଦୁଇଟିଯାକ ଦେଶ ଗୋଟିଏ ସରକାର ଅଧୀନରେ ଥିଲେ । ସେହି ଲାହୋରର ଏକ ଧନିକ ସନ୍ତାନ ଜାନକୀ ଦାସ । ସେ ମଧ୍ୟ ଉଚ୍ଚଶିକ୍ଷିତ, ଏମ୍.ଏ. ପାସ କରିଥାନ୍ତି । କିନ୍ତୁ ଭାରତର ସାଇକେଲ ଚାମ୍ପିଅନ

ଏବଂ ପୃଥିବୀର ଜଣେ ପ୍ରଧାନ ସାଇକେଲ ଚଡ଼ାଳି ଭାବରେ ତାଙ୍କର ଖ୍ୟାତି ଦେଶବିଦେଶରେ ବ୍ୟାପି ଯାଇଥାଏ ।

"୧୯୪୭ ମସିହାରେ ସୁଇଜରଲାଣ୍ଡର ରାଜଧାନୀ ଜୁରିଚ୍-ଠାରେ ବିଶ୍ୱ ଅଲମ୍ପିକ୍ ପ୍ରତିଯୋଗିତା ଅନୁଷ୍ଠିତ ହେଉଥାଏ । ଭାରତୀୟ ଦଳର ଅଧିନାୟକ ରୂପେ ଜାନକୀ ଦାସ ମନୋନୀତ ହୋଇ ସେଠାକୁ ଯାଉଥାନ୍ତି । ଭାରତ ଛାଡ଼ିବା ପୂର୍ବରୁ ମହାତ୍ମା ଗାନ୍ଧୀଙ୍କୁ ଦେଖାକରି ତାଙ୍କ ଆଶୀର୍ବାଦ ନେବାପାଇଁ ସେ ସ୍ଥିର କଲେ ।

## ଜାନକୀ ଦାସ ଗାନ୍ଧୀଙ୍କୁ ଭେଟିଲେ

"ସେତେବେଳେ ଉଡ଼ାଜାହାଜ ଯାତାୟାତ ଏତେ ସୁବିଧା ନ ଥିଲା । ତେଣୁ ଦୂର ଜାଗାକୁ ରେଲଗାଡ଼ିରେ ଯିବାକୁ ପଡ଼ୁଥିଲା । ଗାନ୍ଧୀଜୀ କଲିକତାରେ ରହିଛନ୍ତି ଶୁଣି ଜାନକୀ ଦାସ ସେଠାକୁ ଗଲେ, ମାତ୍ର ସେଠାରେ ତାଙ୍କ ଦେଖା ମିଳିଲା ନାହିଁ । ଶୁଣିଲେ ସେ ବମ୍ବେ ବାହାରିଗଲେଣି । ବମ୍ବେ ଯାଇ ମଧ୍ୟ ନିରାଶ ହେଲେ । ସେଠାରୁ ଅହମଦାବାଦ ଗଲେ । ପରିଶେଷରେ ସାବରମତୀ ଆଶ୍ରମରେ ଗାନ୍ଧୀଜୀଙ୍କ ସଙ୍ଗେ ତାଙ୍କର ଭେଟ ହେଲା ।

"ଜାନକୀ ଦାସ ନମସ୍କାର ଜଣାଇବା ପରେ ମହାତ୍ମାଜୀ ତାଙ୍କୁ ପଚାରିଲେ, "କଣ ଚାହିଁ, ଯୁବକ ?" ଜାନକୀ ଦାସ କହିଲେ ସେ ଭାରତର ଜଣେ ସାଇକେଲ ଚାମ୍ପିଅନ ଏବଂ ପୃଥିବୀର ବିଭିନ୍ନ ସ୍ଥାନରେ ଖେଳ ଦେଖାଇ ରେକର୍ଡ ଭଙ୍ଗ କରିଛନ୍ତି । ତାଙ୍କୁ ମିଳିଥିବା ପ୍ରମାଣପତ୍ରଗୁଡ଼ିକ ଗାନ୍ଧୀଜୀଙ୍କୁ ଦେଖାଇ ପୁଣି କହିଲେ, "ମୋତେ ମୋର ଖେଳୁଆଡ଼ ବନ୍ଧୁମାନେ ଜୁରିଚ ଅଲମ୍ପିକକୁ ଯାଉଥିବା ଖେଳାଳିଦଳର ଅଧିନାୟକରୂପେ ବାଛିଛନ୍ତି । ମୋତେ ଆଶୀର୍ବାଦ

କରନ୍ତୁ ଯେପରି କି ମୋ ପାଇଁ ନୁହେଁ, ମୋ ଦେଶ ଭାରତ ପାଇଁ ସୁନାମ ଓ ଗୌରବ ଯେନି ପାରିବ ।''

''ଦଣ୍ଡେ ଚିନ୍ତା କରି ଗାନ୍ଧୀଜୀ ପଚାରିଲେ, ''ଆଚ୍ଛା, ସେଠାରେ ଉଡ଼ାଇବାପାଇଁ କେଉଁ ପତାକା ତୁମେ ନେଉଛ ?'' ସେତେବେଳେ ତ ଭାରତ ସ୍ୱାଧୀନ ହୋଇ ନଥାଏ, ତେଣୁ ସରକାରୀ ଓ ସାଧାରଣ ସ୍ଥାନରେ ବ୍ରିଟିଶ ହାରଖାପୁ ପତାକା ଉଡ଼ାଯାଉଥାଏ । ଜାନକୀ ଦାସ ସେଇ ପତାକା ଉଡ଼ାଇବେ ବୋଲି କହିବାରୁ ମହାତ୍ମାଜୀ କହିଲେ, ''କାହିଁକି ? ତୁମେ ଖାଣ୍ଟି ଭାରତୀୟ ପତାକା ନେଉନ । ତୁମେ ଯଦି ସେଠାରେ ଉଡ଼ାଇବ ବୋଲି କହିବ, ତେବେ ମୁଁ ତୁମକୁ ଗୋଟିଏ ତିରଙ୍ଗା ପତାକା ଦେବି ।''

''ଜାନକୀ ଦାସ ସମ୍ମତି ଦେବାରୁ ମହାତ୍ମାଜୀ ଗୋଟିଏ ବଡ଼ ପତାକା ଆଶ୍ରମ ଭିତରୁ ମଗାଇଲେ ଏବଂ ତାର ଧଳା ଅଂଶରେ କପିଙ୍ଗ୍ ପେନ୍‌ସିଲରେ ସ୍ୱାକ୍ଷର କଲେ । ପତାକାଟି ଜାନକୀ ଦାସଙ୍କ ହାତକୁ ବଢ଼ାଇ ଦେଇ କହିଲେ, ''ମୁଁ ଜୁରିଚ୍‌ରୁ ଖବର ନେଉଥିବି । କାରଣ ତୁମେ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟର ଦାୟିତ୍ୱ ନେଉଛ । ପୃଥିବୀର ଅନ୍ୟାନ୍ୟ ସ୍ୱାଧୀନ ଦେଶର ପତାକା ପାଖରେ ଭାରତର ଜାତୀୟ ପତାକା ପ୍ରଥମ ହୋଇ ଉଡ଼ିବ । ଏ କମ୍ କଥା ନୁହେଁ । ଯାଅ, ତୁମର ମଙ୍ଗଳ ହେଉ ।''

''ଗାନ୍ଧୀଜୀଙ୍କଠାରୁ ବିଦାୟ ନେଇ ଜାନକୀ ଦାସ ଚାଲିଗଲେ । କିନ୍ତୁ ଜୁରିଚ୍‌ରେ ପହଞ୍ଚିବା ପର୍ଯ୍ୟନ୍ତ ସେ ବାଟସାରା ଗୋଟିଏ କଥା ଭାବୁଥାନ୍ତି । ଭାରତ ଏକ ପରାଧୀନ ଦେଶ । ତାର ନିଜର ଜାତୀୟ ପତାକା ଉଡ଼ାଇବାର ଅଧିକାର ନାହିଁ । ବିଶେଷ କରି ଅଲିମ୍ପିକ୍ ପରି ଆନ୍ତର୍ଜାତିକ ସମାବେଶରେ ଭାରତ ପକ୍ଷରୁ ବ୍ରିଟିଶ ଭାରତୀୟ

ଇଉନିୟନ ଜ୍ୟାକ୍ ପତାକା ଉଡ଼ିବା କଥା । ସେ ମହାତ୍ମାଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇଛନ୍ତି, ତାହା ପାଳନ କରିପାରିବେ ତ ?

"ଜୁରିଚ୍‌ର ଅଲମ୍ପିକ ଷ୍ଟାଡ଼ିୟମ୍ । ଆଜ ଉଦ୍‌ଘାଟନ ଦିବସ । ଅଲମ୍ପିକ୍ ପତାକା ପାଖରେ ଧାଡ଼ି ହୋଇ ସବୁ ଦେଶର ପତାକା ବନ୍ଧା ହୋଇଛି । ଯେଉଁ ଦେଶର ନାମ ଡକାଯାଉଛି, ସେ ଦେଶର ଅଧିନାୟକ ଖୁଣ୍ଟି ପାଖକୁ ଯାଇ ଦଉଡ଼ି ଟାଣି ଦେଇ ତାଙ୍କ ପତାକା ଉଡ଼ାଉଛନ୍ତି ଏବଂ ଏକ ସଂକ୍ଷିପ୍ତ ଭାଷଣ ଦେଉଛନ୍ତି । ଭାରତର ପାଳି ଯେତିକି ପାଖେଇ ଆସୁଛି, ଜାନକୀ ଦାସଙ୍କ ଉଦ୍‌ବେଗ ସେତିକି ବଢ଼ୁଛି । ସେ ଦେଖୁଛନ୍ତି ଧାଡ଼ିରେ ଯେଉଁଠି 'ଭାରତ' ଲେଖାଯାଇଛି, ସେଠି ପରାଧୀନ ଭାରତର ପତାକା ତାରକାଚିହ୍ନିତ ଇଉନିଅନ ଜ୍ୟାକ୍ ଗୋଟିଏ ଖୁଣ୍ଟିରେ ବନ୍ଧା ହୋଇ ଝୁଲୁଛି । ସେ କେବଳ ଦଉଡ଼ି ଟାଣି ତାହାକୁ ଉଡ଼ାଇଦେବେ ।

## ଜୁରିଚ୍‌ରେ ତ୍ରିରଙ୍ଗା ପତାକା

"ଜାନକୀ ଦାସ ନିଜ ପୋଷାକ ଭିତରେ ତ୍ରିରଙ୍ଗା ପତାକାଟିକୁ ଲୁଚାଇ ରଖିଥାନ୍ତି । ଯେତେବେଳେ ଭାରତର ନାମ ଡକରା ହେଲା, ସେ ଖୁଣ୍ଟି ପାଖକୁ ଆଗେଇଗଲେ । ସେତେବେଳେ ସେ ତାଙ୍କ ଦେହରେ ଅନୁଭବ କଲେ ଶତସିଂହର ବିକ୍ରମ । ମନରେ ଅଦମ୍ୟ ସାହସ । ଯାହା ଘଟୁ ପଛକେ, ସେ ଜନ୍ମଭୂମିର ଇଜ୍ଜତ ରକ୍ଷା କରିବେ । ଖୁଣ୍ଟିରୁ ବ୍ରିଟିଶ ଶାସକଙ୍କ ପତାକାକୁ ଫିଟାଇ ତା ସ୍ଥାନରେ ତ୍ରିରଙ୍ଗା ପତାକାଟିକୁ ଦୃଢ଼ ଭାବରେ ବାନ୍ଧିଦେଲେ । ଦର୍ଶକମାନେ ବିଳମ୍ବର କାରଣ ବୁଝି ନ ପାରି ଉତ୍କଣ୍ଠାରେ ଅନାଇ-ଥାନ୍ତି । କେତେକ ମନେ ମନେ ବିରକ୍ତ ମଧ୍ୟ ହେଉଥାନ୍ତି । ଏତିକିବେଳେ ଦେଖାଗଲା ଏକ ତ୍ରିରଙ୍ଗା ପତାକା ଉପରକୁ ଉଠି ଅନ୍ୟାନ୍ୟ ପତାକା ସହିତ ଫରଫର ହୋଇ ଉଡ଼ୁଛି !

"ଦର୍ଶକମାନେ ଅବାକ୍ ହୋଇଗଲେ । ଔପନିବେଶିକ ତାରକାଚିହ୍ନିତ ଇଉନିଅନ ଜ୍ୟାକ୍‌ର ସ୍ଥାନ ନେଇଛି ସ୍ୱାଧୀନ ଭାରତର ଜାତୀୟ ପତାକା । ତିରଙ୍ଗା ପତାକାର ମଝିରେ ଏକ ଚରଖା ଚିହ୍ନ ଏବଂ ତା ତଳେ ଗାନ୍ଧୀଜୀଙ୍କ ସ୍ୱାକ୍ଷର । ସ୍ୱାଧୀନତାପ୍ରେମୀ ବିଶ୍ୱ-ନାଗରିକଗଣ କରତାଳିରେ ଆକାଶ କମ୍ପାଇଦେଲେ; ମାତ୍ର ବ୍ରିଟିଶ ପ୍ରତିନିଧିଙ୍କ ମୁହଁ ଲଜ୍ଜା ଓ ବିରକ୍ତିରେ ନାଲି ପଡ଼ିଗଲା ।

"ଆମ ଜାତୀୟ ପତାକାର କାହାଣୀରେ ଏହା ଏକ ସ୍ମରଣୀୟ ଅଧ୍ୟାୟ । ଏହି ଘଟଣାର ପରଦିନ ପୃଥିବୀର ସମସ୍ତ ବଡ଼ ବଡ଼ ସମ୍ବାଦପତ୍ରରେ ଜାନକୀ ଦାସଙ୍କ ପତାକା ଉତ୍ତୋଳନର ବିବରଣୀ ତାଙ୍କ ଫଟୋସହ ପ୍ରକାଶ ପାଇଲା । ଗାନ୍ଧୀଜୀ ଯେତେବେଳେ ସମ୍ବାଦ-ପତ୍ରରୁ ଏହା ଜାଣିଲେ, ତାଙ୍କ ହୃଦୟ ଆନନ୍ଦରେ ପୂରିଉଠିଲା । ସେ ସଙ୍ଗେ ସଙ୍ଗେ ଏହି ମର୍ମରେ ଜାନକୀ ଦାସଙ୍କ ନିକଟକୁ ଟେଲିଗ୍ରାମ କଲେ— "ସମ୍ବାଦପତ୍ରରୁ ଜାଣିଲି ତୁମେ ତୁମର ପ୍ରତିଜ୍ଞା ରକ୍ଷା କରିଛ । ମୋର ଆଶୀର୍ବାଦ ସଫଳ ହୋଇଛି । ପୃଥିବୀର ଅନ୍ୟ ଦେଶମାନଙ୍କ ଆଗରେ ତୁମେ ଜନ୍ମଭୂମିର ସମ୍ମାନ ରକ୍ଷା କରିପାରିଛ । ସେଥିପାଇଁ ମୋର ଧନ୍ୟବାଦ ନେବ । ମୋର ବିଶ୍ୱାସ, ଭାରତ ତାର ସ୍ୱାଧୀନତା ପାଇବାକୁ ଆଉ ବେଶି ଦିନ ଲାଗିବ ନାହିଁ ।"

ଦୀପକ ପଚାରିଲା, "ଇଂରେଜ ସରକାର ଜାନକୀ ଦାସଙ୍କୁ ଏଥିପାଇଁ ଦଣ୍ଡ ଦେଇଥିବେ ତ ?"

ନିରଞ୍ଜନବାବୁ କହିଲେ, "ଅନ୍ୟ ସମୟ ହୋଇଥିଲେ ବା ଦେଇଥାନ୍ତେ, ମାତ୍ର ସେତେବେଳକୁ ଇଂରେଜ ସରକାରର ମେରୁଦଣ୍ଡ ଭାଙ୍ଗି ଯାଇଥିଲା । ଏହା ପରା ୧୯୪୬ ମସିହାର ଘଟଣା । କେବେ ଯଦି ତୁମେ ଦିଲ୍ଲୀ ଯିବ, ଦେଖିବ ରାଜଘାଟର ଗାନ୍ଧୀ ସଂଗ୍ରହାଳୟରେ

ନୂଶଟରେ ଉଡ଼ୁଥିବା ସେହି ତିରଙ୍ଗା ପତାକା ଏବଂ ମହାତ୍ମାଙ୍କ ଟେଲିଗ୍ରାମ ସାଇତା ହୋଇ ରହିଛି ।"

ଜୁଲି ପଚାରିଲା, "ବାପା, ଆଜିକାଲି ଆମେ ଯେଉଁ ଜାତୀୟ ପତାକା ଦେଖୁଛୁ, ସେଥିରେ ତ ଚରଖା ଚିହ୍ନ ନାହିଁ ?"

"ଚରଖା ସିନା ନାହିଁ, କିନ୍ତୁ ଚକ୍ର ଅଛି । ଚରଖା ବଦଳରେ କାହିଁକି ଚକ୍ର ରଖାଯାଇଛି, ସେ କଥା ଆଉ ଦିନେ କହିବି । ଆଜି ତୁମେ ପଢ଼ାପଢ଼ି କର ।"—ଏହା କହି ନିରଞ୍ଜନବାବୁ ନିଜ କାମରେ ଉଠି ଚାଲିଗଲେ ।



# ଆମ ଜାତୀୟ ପତାକାର ଇତିହାସ

ଜୁଲି ସେଦିନ ତା ବାପାଙ୍କୁ ପଚାରିଥିଲା—'ଆମ ଜାତୀୟ ପତାକାରୁ ଚରଖା ଚିହ୍ନ କାହିଁକି ଉଠାଇଦିଆଗଲା ?' ଆଉ ଦିନେ ସୁବିଧା ଦେଖି କହିବେ ବୋଲି ନିରଞ୍ଜନବାବୁ କଥା ଦେଇଥିଲେ । ଆଜି ଛୁଟି ଦିନ ଦେଖି ସେ ପିଲାଦୁହିଁଙ୍କୁ ପାଖକୁ ଡାକି ସେହି ବିଷୟ ଆରମ୍ଭ କଲେ ।

ସେ କହିଲେ, "ବିଭିନ୍ନ ଜାତିର ଯେପରି ଇତିହାସ ଅଛି, ଆମ ଜାତୀୟ ପତାକାର ସେହିପରି ଏକ ଦୀର୍ଘ ଇତିହାସ ଅଛି । ତାକୁ ବର୍ତ୍ତମାନ ଯେପରି ଦେଖୁଛ, ପ୍ରଥମେ ତାର ରୂପ ସେପରି ନ ଥିଲା । ଭାରତ ସ୍ୱାଧୀନ ହେଲାପରେ ତାର ରୂପ ନିର୍ଦ୍ଦିଷ୍ଟ କରିଦିଆଗଲା ଏବଂ ସେହିଦିନୁ ତାହା ଅପରିବର୍ତ୍ତିତ ରହିଛି ।"

"ତା ପୂର୍ବରୁ ଏହାର ରୂପ କିପରି ଥିଲା ?" ଦୀପକ ପଚାରିଲା ।

ନିରଞ୍ଜନବାବୁ କହିଲେ, "ମୁଁ ଆମ ପତାକାର ଜନ୍ମକାହାଣୀ ନ କହିଲେ ତୁମେ ସବୁ କଥା ଜାଣିପାରିବ ନାହିଁ । ତୁମେ ବହିରେ ପଢ଼ିଥିବ, ଭାରତର ସ୍ୱାଧୀନତା ସଂଗ୍ରାମ ବହୁ ବର୍ଷ ଧରି ଚାଲିଥିଲା । ଯେଉଁମାନେ ସେଥିରେ ଯୋଗ ଦେଇଥିଲେ, ସେମାନେ ଇଉନିଅନ ଜ୍ୟାକ୍ ଚିହ୍ନ ଥିବା ବ୍ରିଟିଶ ପତାକାକୁ ନିଜର ବୋଲି ଗ୍ରହଣ କଲେ ନାହିଁ । ଭାରତର ଏକ ସ୍ୱତନ୍ତ୍ର ଜାତୀୟ ପତାକା କରିବା ପାଇଁ ସେମାନେ ସ୍ଥିର କଲେ ।

## ମାଡାମ କାମା

କାଥିଆବାଡ଼ର ପାର୍ଶୀ ପରିବାରରେ ଜନ୍ମିଥିବା ଜଣେ ବିପ୍ଳବିଣୀ ମହିଳା ଆମ ଜାତୀୟ ପତାକାକୁ ସର୍ବପ୍ରଥମେ ରୂପ

ଦେଇଥିଲେ । ତାଙ୍କ ନାମ ମାଡାମ୍ ଭିକାଜୀ ରୁସ୍ତମ କାମା । ତାଙ୍କର ପ୍ରଥମ କର୍ମକ୍ଷେତ୍ର ଥିଲା ଇଂଲଣ୍ଡ । ତାପରେ ସେ ପ୍ୟାରିସକୁ ଉଠିଆସିଲେ । ବହୁଦିନଯାଏ ଇଉରୋପରେ ଥିବା ଭାରତୀୟ ବିପ୍ଳବୀମାନଙ୍କର ଏକମାତ୍ର ଆଶ୍ରୟସ୍ଥଳ ଥିଲା କାମାଙ୍କ ବାସଭବନ । ସେ ' 'ବନ୍ଦେ ମାତରମ୍' ନାମକ ଏକ ପତ୍ରିକା ପ୍ରକାଶ କରିଥିଲେ । ସେ ଯେଉଁ ଜାତୀୟ ପତାକାର ପରିକଳ୍ପନା କରିଥିଲେ, ସେଥିରେ ତିନୋଟି ରଙ୍ଗର ପଟି ସମାନ୍ତରାଳ ଭାବରେ ରହିଥିଲା । ପ୍ରଥମେ ଥିଲା ଗାଢ଼ ପୀତ ବର୍ଣ୍ଣ, ତା ତଳକୁ ଶ୍ୱେତ ଏବଂ ଶେଷରେ ସବୁଜ । ପ୍ରଥମ ପଟିରେ ଆଠଟି ତାରକା ଥିଲା । ଧଳା ପଟିରେ ହିନ୍ଦୀରେ 'ବନ୍ଦେ ମାତରମ୍ ଏବଂ ସବୁଜରେ ବର୍ଦ୍ଧିଷ୍ଣୁ ଚନ୍ଦ୍ର ଓ ତାରକା ଚିହ୍ନିତ ରହିଥିଲା । ଏ ହେଲା ୧୯୦୭ ମସିହାର କଥା ।

ଡାକ୍ତର ଆନିବେସାନ୍ତ ୧୯୧୭ ମସିହାରେ ଯେତେବେଳେ ସ୍ୱାୟତ୍ତ ଶାସନ ( Home Rule ) ପାଇଁ ଆନ୍ଦୋଳନ କଲେ, ସେତେବେଳେ ଆଉ ଏକ ପ୍ରକାର ପତାକା ଚଳାଇବାର ସ୍ଥିର ହୋଇଥିଲା । ସେହି ପତାକାର ଏକ ପାଖରେ ସପ୍ତର୍ଷିମଣ୍ଡଳର ଚିତ୍ର ଏବଂ ବାଁ ପାଖରେ ଇଉନିଅନ ଜ୍ୟାକ୍‌ର ଛବି ଥିଲା । ବ୍ରିଟିଶ ରାଜ୍ୟଗୋଷ୍ଠୀ ଭିତରେ ଭାରତ ଏକ ଉପନିବେଶ—ଏହି ସମ୍ପର୍କର ଦ୍ୟୋତକ ଥିଲା ଉକ୍ତ ପତାକା । ମାତ୍ର ସେଥିରେ ବ୍ରିଟିଶ ସାମ୍ରାଜ୍ୟର ଚିହ୍ନ ଥିବାରୁ ଲୋକେ ତାହା ଗ୍ରହଣ କଲେ ନାହିଁ ।

୧୯୨୦ ମସିହାରେ ମହାତ୍ମା ଗାନ୍ଧୀ କଂଗ୍ରେସର ନେତୃତ୍ୱ ନେଲେ । ସେ ପର୍ଯ୍ୟନ୍ତ ସରକାରୀ ଏବଂ ବେସରକାରୀ ସଭାସମିତି-ମାନଙ୍କରେ ସେହି ବ୍ରିଟିଶ ଭାରତୀୟ ପତାକା ବ୍ୟବହୃତ ହେଉଥିଲା । ମହାତ୍ମାଜୀଙ୍କର ବିଶ୍ୱାସ ଥିଲା ବ୍ରିଟିଶ ରାଜ୍ୟଗୋଷ୍ଠୀ ଭିତରେ ରହି ମଧ୍ୟ ଭାରତ କିଛି ସୁବିଧା ପାଇବ । ମାତ୍ର ଜାଲିଆନାୱାଲାବାଗ୍

ହତ୍ୟାକାଣ୍ଡ (୧୯୧୯) ପରେ ତାଙ୍କର ସେ ଆଶା ଧୂଳିସାତ୍ ହୋଇଗଲା । ସମସ୍ତ ଭାରତବାସୀଙ୍କୁ ଏକଜୁଟ କରି ଇଂରେଜ ସରକାର ବିରୁଦ୍ଧରେ ଲଢ଼ିବା ପାଇଁ ସେ ଆହ୍ୱାନ ଦେଲେ । ସବୁ ଧର୍ମର ଓ ସବୁ ଭାଷାଭାଷୀ ଲୋକଙ୍କୁ ଗୋଟିଏ ପତାକାତଳେ ଠିଆ କରାଇବାକୁ ହେବ । ଏଥିପାଇଁ ସେ ଆମ ଜାତୀୟ ପତାକାକୁ ଏକ ନୂଆ ରୂପ ଦେଲେ ।

## କଂଗ୍ରେସର ତ୍ରିରଙ୍ଗ ପତାକା

ଏହି ପତାକାରେ ମଧ୍ୟ ତିନୋଟି ରଙ୍ଗର ପଟି ଥିଲା । ତାହାର କ୍ରମ ଥିଲା ଏହିପରି—ଧଳା, ସବୁଜ ଓ ଲାଲ । ଧଳା ସଂଖ୍ୟାଲଘୁ ସଂପ୍ରଦାୟର, ସବୁଜ ମୁସଲମାନ ଓ ଲାଲ ହିନ୍ଦୁଧର୍ମର ଲୋକଙ୍କ ସଙ୍କେତ ଥିଲା । ଏହି ପତାକାରେ ଧଳାକୁ ପ୍ରଥମ ସ୍ଥାନ ଦେବାର ଅର୍ଥ ସଂଖ୍ୟାଲଘୁ ସଂପ୍ରଦାୟର ଲୋକଙ୍କୁ ସଂଖ୍ୟାଗରିଷ୍ଠ ଲୋକମାନେ ରକ୍ଷା କରିବେ, ସେମାନଙ୍କ ମଙ୍ଗଳପାଇଁ ବିଶେଷ ଦୃଷ୍ଟି ଦେବେ । ଭାରତରେ ସବୁ ଧର୍ମ ଓ ସବୁ ଜାତିର ସମାନ ଅଧିକାର—ଏହା ସୂଚାଇବା ପାଇଁ ତିନୋଟି ରଙ୍ଗର ପଟିକୁ ସମାନ ରଖାଯାଇଥିଲା । ଚରଖା ଥିଲା ଭାରତୀୟ ଶିଳ୍ପର ସଙ୍କେତ ଏବଂ କଂଗ୍ରେସ ଅନୁଷ୍ଠାନ ଯେ ଜନତାର ଅନୁଷ୍ଠାନ ତାହା ମଧ୍ୟ ଏଥିରୁ ସୂଚିତ ହେଉଥିଲା ।



ଅସହଯୋଗ ଆନ୍ଦୋଳନ ପରଠାରୁ ଲୋକମାନଙ୍କର ସାହସ ବଢ଼ିଗଲା । ୧୯୨୧ ମସିହାରେ ଅହମଦାବାଦ କଂଗ୍ରେସରେ ସର୍ବ-ପ୍ରଥମେ ଚରଖାଚିହ୍ନିତ ତ୍ରିରଙ୍ଗ ପତାକା ଉତ୍ତୋଳନ କରାଯାଇଥିଲା । ସେହି ବର୍ଷଠାରୁ ପ୍ରତ୍ୟେକ କଂଗ୍ରେସ ଅଧିବେଶନରେ ସ୍ୱାଧୀନତା ସଂଗ୍ରାମୀମାନେ ଭାରତର ଏହି ଜାତୀୟ ପତାକାକୁ ପ୍ରକାଶ୍ୟରେ ଉଡ଼ାଇଲେ ।

ଅନେକ ସ୍ଥଳରେ ସରକାର ସେମାନଙ୍କୁ ବାଧା ଦେଇଥିଲେ । ୧୯୨୩ ମସିହାରେ ନାଗପୁରଠାରେ ବିରାଟ ଆକାରରେ ଏକ ପତାକା ସତ୍ୟାଗ୍ରହ ହୋଇଥିଲା ।"

"ହଁ, ଆମେ ସେ କଥା ସ୍କୁଲରେ ସେଦିନ ଶୁଣିଛୁ," ଦୀପକ କହିଲା ।

"ତେବେ ତା ପର କଥା ଶୁଣ", ନିରଞ୍ଜନବାବୁ କହିଲେ । ୧୯୨୯ରେ ହିନ୍ଦୁସ୍ତାନୀ ସେବାଦଳ ପ୍ରତି ମାସରେ ଏକ ଜାତୀୟ ପତାକା ଦିବସ ପାଳିବେ ବୋଲି ସ୍ଥିର କଲେ । କଲିକତାରେ ସେମାନେ ନିୟମ କରିଥିଲେ ଯେ ପ୍ରତି ମାସର ଶେଷ ରବିବାର ଦିନ ସକାଳ ୮ଟାରେ ଦେଶସାରା ଜାତୀୟ ପତାକା ଉତ୍ତୋଳିତ ହେବ । ଏହା ବିପୁଳ ସମର୍ଥନ ଲାଭ କରିଥିଲା । ବହୁ ବାସଭବନ ଏବଂ ମ୍ୟୁନିସିପାଲିଟି ନିୟମିତ ଜାତୀୟ ପତାକା ଉଡ଼ାଉଥିଲେ ।



ସେହି ବର୍ଷ ଲାହୋର କଂଗ୍ରେସ ଅଧିବେଶନରେ ଡିସେମ୍ବର ୩୧ ତାରିଖ ମଧ୍ୟ ରାତ୍ରରେ ପଣ୍ଡିତ ଜବାହାରଲାଲ ନେହେରୁ ଭାରତ ପାଇଁ ପୂର୍ଣ୍ଣ ସ୍ୱାଧୀନତା ଦାବୀ କରି କଂଗ୍ରେସ ମଣ୍ଡପରେ ଜାତି ତରଫରୁ ତିରଙ୍ଗା ପତାକା ଉଡ଼ାଇଥିଲେ ।

୧୯୩୧ ମସିହା ଅଗଷ୍ଟ ୬, ୭ ଓ ୮ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟି ଜାତୀୟ ପତାକାରେ କେତେକ ପରିବର୍ତ୍ତନ କରିବାକୁ ପ୍ରସ୍ତାବ କଲେ । ପତାକାର ରଙ୍ଗପଟିଗୁଡ଼ିକ ପୂର୍ବପରି ସମାନ ଓ ସମାନ୍ତର ରହିଲା, ମାତ୍ର କ୍ରମ ବଦଳିଗଲା । ଉପରେ ରହିଲା ଗୈରିକ, ମଝିରେ

ଧଳା ଏବଂ ତଳେ ସବୁଜ । ଧଳା ପଟି ମଝିରେ ଗାଢ଼ ନୀଳ ରଙ୍ଗରେ ଚରଖାର ଚିହ୍ନ ରହିଲା । ପତାକାର ରଙ୍ଗଗୁଡ଼ିକ ଧର୍ମର ପ୍ରତୀକ ନ ହୋଇ ଗୁଣର ପ୍ରତୀକ ହେଲା । ଗୈରିକ ହେଲା ଶୌର୍ଯ୍ୟ ଓ ତ୍ୟାଗର, ଶ୍ୱେତ ଶାନ୍ତି ଓ ସତ୍ୟର ଏବଂ ସବୁଜ ହେଲା ବିଶ୍ୱାସ ଓ ବୀରତ୍ୱର ସଙ୍କେତ । ଚରଖାଦ୍ୱାରା ଜନତାର ଆଶା ସୂଚିତ ହେଲା । ଦୈର୍ଘ୍ୟ ପ୍ରସ୍ଥର ଅନୁପାତ ରହିଲା ତିନରେ ଦୁଇ । ସ୍ଥିର ହେଲା ଯେ ପ୍ରତି ବର୍ଷ ଅଗଷ୍ଟ ୩୦ ତାରିଖକୁ ପତାକା ଦିବସରୂପେ ପାଳନ କରାଯିବ । ୧୯୩୩ ମସିହାରେ ବମ୍ବେରେ କଂଗ୍ରେସ କାର୍ଯ୍ୟକାରୀ କମିଟି ବସି ଉକ୍ତ ପରିବର୍ତ୍ତନକୁ ଗ୍ରହଣ କଲେ । ଏହି ପତାକା ୧୯୪୭ ମସିହାରେ ଭାରତ ସ୍ୱାଧୀନତା ପାଇବାପର୍ଯ୍ୟନ୍ତ ଜାତୀୟ କଂଗ୍ରେସଦ୍ୱାରା ବ୍ୟବହୃତ ହେଉଥିଲା ।

ଦ୍ୱିତୀୟ ମହାସମର ଲାଗିଥିଲାବେଳେ ସୁଭାଷଚନ୍ଦ୍ର ବୋଷ ଭାରତରୁ ପଳାଇ ଯାଇ ଜର୍ମାନୀରେ ହିଟଲର ସଙ୍ଗେ ମିଶି ଇଂରେଜ ସରକାର ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କଲେ । ୧୯୪୧ ମସିହା ନଭେମ୍ବର ୨ ତାରିଖରେ ସେ ବର୍ଲିନରେ ଆଜାଦ ହିନ୍ଦ ସଂଘ (Free India Centre) ଉଦ୍‌ଘାଟନ କଲେ । ଏହି ଉତ୍ସବରେ ଭାରତର ଜାତୀୟ ସଙ୍ଗୀତରୂପେ 'ଜନଗଣମନ......' ଗାନ କରାଯାଇଥିଲା ଏବଂ ଭାରତୀୟମାନଙ୍କ ନିଜ ନିଜ ଭିତରେ ସମ୍ଭାଷଣ ରୂପେ ଗୃହୀତ ହୋଇଥିଲା 'ଜୟ ହିନ୍ଦ୍' । ସେହି ଆଜାଦ୍ ହିନ୍ଦ୍ ସଂଘ ତତ୍‌କାଳୀନ ଭାରତର ତିରଙ୍ଗ ପତାକାକୁ ଜାତୀୟ ପତାକା-ରୂପେ ସ୍ୱୀକାର କରିଥିଲେ । କେବଳ ପତାକାରେ ଥିବା ଅରଟ ଚିହ୍ନ ପରିବର୍ତ୍ତେ ଏକ ଲମ୍ଫ ପ୍ରଦାନ କରୁଥିବା ସିଂହର ଛବି ସେହି ପତାକାରେ ଯୋଗ କରାଯାଇଥିଲା ।

## ସ୍ୱାଧୀନ ଭାରତର ପତାକା

ଶାସନ ବିଧାୟକ ସଭାର ସଭାପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ୧୯୪୭ ଜୁନ୍ ମାସ ୨୩ ତାରିଖରେ ସ୍ୱାଧୀନ ଭାରତର ଜାତୀୟ ପତାକାକୁ ଚୂଡ଼ାନ୍ତ ରୂପ ଦେବାପାଇଁ ଏକ କମିଟି ବସାଇଲେ । ଆଲୋଚନାରେ ସ୍ଥିର ହେଲା ଯେ ଯେହେତୁ ଚରଖା ଉଭୟପାଖ ଚିତ୍ରର ଦୁଇପାଖ ସମାନ ରହୁନାହିଁ, ତା ପରିବର୍ତ୍ତେ ସେଥିରେ ଚରଖାର ପ୍ରତୀକରୂପୀ ସାରନାଥ ଅଶୋକ ସ୍ତମ୍ଭରେ ଥିବା ଧର୍ମଚକ୍ର ଗାଢ଼ ନୀଳବର୍ଣ୍ଣରେ ଶୋଭା ପାଇବ । ସେହି ବର୍ଷ ଜୁଲାଇ ୨୨ ତାରିଖରେ ଏହି ପ୍ରସ୍ତାବ ଗୃହୀତ ହେଲା ପରେ ଶାସନ ବିଧାୟକ ସଭା ୧୯୪୭ ମସିହା ଅଗଷ୍ଟ ୧୪ ତାରିଖର ମଧ୍ୟରାତ୍ର ବୈଠକରେ ଭାରତର ମହିଳାମାନଙ୍କ ତରଫରୁ ଏହାକୁ ଜାତି ଉଦ୍ଦେଶ୍ୟରେ ଅର୍ପଣ କଲେ । ଅଶୋକ ଏବଂ ଗାନ୍ଧୀଙ୍କର ଆଦର୍ଶ ଆମ ଜାତୀୟ ପତାକାରେ ଏହିପରି ରୂପାୟିତ ହୋଇଥିବାରୁ ତାହା ସମସ୍ତଙ୍କର ଆଦରଣୀୟ ହୋଇଅଛି ।”

କଥା ଶେଷ କରି ନିରଞ୍ଜନବାବୁ କହିଲେ, “ଜୁଲି ସେଦିନ ଯେଉଁ ପ୍ରଶ୍ନ ପଚାରିଥିଲା, ତାର ଉତ୍ତର ବର୍ତ୍ତମାନ ପାଇଗଲା । ଆଜି ସେତିକି ଥାଉ । ଚାଲ ଖାଇବାକୁ ଯିବା ।”



# ଜାତୀୟ ପତାକାର ବ୍ୟବହାରବିଧି

ପ୍ରଧାନ ଶିକ୍ଷକ ଦିନେ ଛାତ୍ରଛାତ୍ରୀମାନଙ୍କୁ ଏକତ୍ର କରି କହିଲେ, "ଭାରତ ସରକାର ଜାତୀୟ ପତାକାର ମର୍ଯ୍ୟାଦା ରକ୍ଷା ଉଦ୍ଦେଶ୍ୟରେ କେତେକ ନିୟମ ପ୍ରଣୟନ କରିଅଛନ୍ତି । ପ୍ରାୟ ସବୁ ସ୍ୱାଧୀନ ଦେଶରେ ଏହିଭଳି ବିଧିବିଧାନ ଅଛି; କାରଣ ଜାତୀୟ ପତାକା ଏକ ପବିତ୍ର ବସ୍ତୁ । ଦେବମନ୍ଦିରର ପତାକା ଯେପରି ପବିତ୍ର, ଜନ୍ମଭୂମିର ପତାକା ସେହିପରି ପବିତ୍ର । ଜାତୀୟ ପତାକାର ଅସମ୍ମାନ ଜନ୍ମଭୂମିର ଅସମ୍ମାନ ସଙ୍ଗେ ସମାନ । ମୁଁ ଏ ଯେଉଁ ନିୟମଗୁଡ଼ିକ ବର୍ତ୍ତମାନ ପଢ଼ି ତୁମକୁ ଶୁଣାଇବି, ତାହା ଆମ ଜାତୀୟ ପତାକାର ଉପଯୁକ୍ତ ବ୍ୟବହାର ଏବଂ ପ୍ରଦର୍ଶନ ଉଦ୍ଦେଶ୍ୟରେ ଭାରତ ସରକାର ପ୍ରଣୟନ କରିଅଛନ୍ତି । ଶୁଣ ।

ଯେତେବେଳେ ଜାତୀୟ ପତାକା ଉଡ଼ାଯିବ, ଏହା ଯେପରି ସର୍ବପ୍ରଧାନ ଏବଂ ସମ୍ମାନସୂଚକ ସ୍ଥାନ ଅଧିକାର କରିବ । କୌଣସି-ଠାରେ ପତାକାକୁ ଅନ୍ୟ କୌଣସି ବ୍ୟକ୍ତି ବା ପଦାର୍ଥ ଉଦ୍ଦେଶ୍ୟରେ ନୁଆଇଁ ବା ଉଠାଇ ନମସ୍କାର କରୁଥିବା ଭଳି ଅବସ୍ଥାରେ ଉଡ଼ାଯିବ ନାହିଁ କିମ୍ବା ଅନ୍ୟ କୌଣସି ପତାକାକୁ ଜାତୀୟ ପତାକା-ଉପରେ ବା ତା ଡାହାଣରେ ସ୍ଥାନ ଦିଆଯିବ ନାହିଁ ।

ଯଦି ଗୋଟିଏ ଧାଡ଼ିରେ ଅନେକଗୁଡ଼ିଏ ପତାକା ଉଡ଼ାଇବାର ଥାଏ, ତେବେ ସବୁଗୁଡ଼ିକୁ ଜାତୀୟ ପତାକାର ବାମରେ ସ୍ଥାନ ଦିଆଯିବ । ଅନ୍ୟ ପତାକାଗୁଡ଼ିକୁ ଯେତେବେଳେ ଉଠାଯିବ, ଜାତୀୟ ପତାକା ଯେପରି ସମସ୍ତଙ୍କ ଉପରେ ରହିବ ।

## ଘର ଉପରେ ଉଡ଼ାଇବା କଥା

ମୁଖ୍ୟ ସରକାରୀ ଅଫିସ୍ ଯଥା, ହାଇକୋର୍ଟ, ସେକ୍ରେଟାରିଏଟ୍, କମିଶନରଙ୍କ ଅଫିସ୍, କଲେକ୍ଟରେଟ୍, ଜେଲ, କଷ୍ଟମବୋର୍ଡ, ମ୍ୟୁନିସିପାଲିଟି ଏବଂ ଜିଲ୍ଲା ପରିଷଦ ଅଫିସମାନଙ୍କରେ ସାଧାରଣତଃ ଏହି ପତାକା ଉଡ଼ାଯିବ ଏବଂ ରବିବାର ଓ ଛୁଟିଦିନ ସମେତ ପ୍ରତ୍ୟେକ ଦିନ ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ, ଯେ କୌଣସି ପାଗରେ ଏହା ଉଡୁଥିବ । ବିଶେଷ ଦିନମାନଙ୍କରେ ରାତିରେ ମଧ୍ୟ ଉକ୍ତ ଅଫିସମାନଙ୍କରେ ଜାତୀୟ ପତାକା ଉଡ଼ାଯାଇପାରେ ।

ସାଧାରଣତନ୍ତ୍ର ଦିବସ, ଜାତୀୟ ସପ୍ତାହ, ସ୍ୱାଧୀନତା ଦିବସ, ମହାତ୍ମା ଗାନ୍ଧୀଙ୍କ ଜନ୍ମଦିବସ ଏବଂ ଏହି ପ୍ରକାର ଜାତୀୟ ଉତ୍ସବ-ଦିନମାନଙ୍କରେ ଅନ୍ୟମାନେ ଜାତୀୟ ପତାକା ଉଡ଼ାଇବାରେ କୌଣସି ବାଧା ରହିବ ନାହିଁ । କିନ୍ତୁ ସେହି ଦିନଟି ଗତ ହେଲେ ପତାକା କାଢ଼ି ନିଆଯିବ ।

ଉପ-ରାଷ୍ଟ୍ରପତିଙ୍କ ବାସଭବନ ଏବଂ ବିଦେଶରେ ଥିବା ଭାରତୀୟ ଦୂତାବାସମାନଙ୍କରେ ଏହି ପତାକା ଉଡ଼ିପାରିବ ।

ରାଷ୍ଟ୍ରପତିଙ୍କର ଯେଉଁ ସ୍ୱତନ୍ତ୍ର ପତାକା ଅଛି, ସେ ତାକୁ ଉଡ଼ାଇବେ । ରାଜ୍ୟପାଳବର୍ଗ ଏବଂ ଲେଫ୍‌ଟେନାଣ୍ଟ୍ ଗଭର୍ଣ୍ଣରମାନଙ୍କର ଯେଉଁ ସ୍ୱତନ୍ତ୍ର ପତାକା ନିର୍ଦ୍ଦିଷ୍ଟ ଅଛି, ସେମାନେ ମଧ୍ୟ ତାକୁ ନିଜ ନିଜ ରାଜ୍ୟଭିତରେ ଉଡ଼ାଇବେ । କିନ୍ତୁ ରାଜ୍ୟ ବାହାରେ ସେମାନେ ଯେ କୌଣସି ସ୍ଥାନରେ ଥାଆନ୍ତୁ ପଛକେ, କେବଳ ଜାତୀୟ ପତାକା ଉଡ଼ାଇପାରିବେ; ନିଜର ସ୍ୱତନ୍ତ୍ର ପତାକା ଉଡ଼ାଇବେ ନାହିଁ ।

ଭାରତର ସୀମାନ୍ତ ଘାଟୀ ଓ ଶୁଳ୍କ ଅଫିସମାନଙ୍କ ଉପରେ ମଧ୍ୟ ଜାତୀୟ ପତାକା ଉଡ଼ିପାରିବ ।

## ମଟର ଗାଡ଼ି ଉପରେ ଉଡ଼ାଇବା ବିଧି

କେବଳ ଉପ-ରାଷ୍ଟ୍ରପତି, ରାଜ୍ୟପାଳ, ଲେଫଟେନାଣ୍ଟ୍ ଗଭର୍ଣ୍ଣର (ରାଜ୍ୟବାହାରେ ଥିଲାବେଳେ) ଏବଂ ବିଦେଶସ୍ଥ ଭାରତୀୟ ରାଷ୍ଟ୍ରଦୂତ-ମାନେ ନିଜର ମଟରଗାଡ଼ି ଉପରେ ଜାତୀୟ ପତାକା ଉଡ଼ାଇ-ପାରିବେ । ମନ୍ତ୍ରୀମାନେ ଗସ୍ତରେ ଯାଇଥିବାବେଳେ ଅଥବା ବିଶିଷ୍ଟ ଜାତୀୟ ଉତ୍ସବ ଦିନମାନଙ୍କରେ ନିଜ ମଟରଗାଡ଼ି ଉପରେ ଏହି ପତାକା ଉଡ଼ାଇପାରିବେ ।

ରାଷ୍ଟ୍ରପତିଙ୍କ ଗାଡ଼ିରେ ତାଙ୍କ ସ୍ୱତନ୍ତ୍ର ପତାକା ଉଡ଼ିବ । ଯଦି ପ୍ରଧାନ ମନ୍ତ୍ରୀ କୌଣସି ଗଭର୍ଣ୍ଣର କିମ୍ବା ଲେଫଟେନାଣ୍ଟ ଗଭର୍ଣ୍ଣରଙ୍କ ସଙ୍ଗେ ଏକା ଗାଡ଼ିରେ ବସି ଯାଉଥାନ୍ତି, ତେବେ ସେ ଗାଡ଼ି ଉପରେ କେବଳ ଜାତୀୟ ପତାକାହିଁ ଉଡ଼ିବ ।

## ଅନ୍ୟାନ୍ୟ ନିୟମ

ଛିଣ୍ଡା ବା ବିକୃତ ପତାକା ଉଡ଼ାଯିବ ନାହିଁ କିମ୍ବା ଜାତୀୟ ପତାକାକୁ ଫୁଲ ଫାନସ୍‌ପରି କୌଣସିଠାରେ ସଜାଇବା ଉଦ୍ଦେଶ୍ୟରେ ବ୍ୟବହାର କରାଯିବ ନାହିଁ । କୌଣସି ରଙ୍ଗୀନ କନାକୁ ଜାତୀୟ ପତାକା ପରି ଦେଖାଯିବା ଭଳି ସଜାଇ ରଖାଯିବ ନାହିଁ ।

କୌଣସି ବକ୍ତାଙ୍କର ସମ୍ମୁଖସ୍ଥ ଟେବୁଲ ବା ପ୍ଲାଟଫର୍ମ ଉପରେ ପତାକାକୁ ବିଛାଇ ରଖାଯିବ ନାହିଁ । ତଳେ ବା ପାଣିରେ ଜାତୀୟ ପତାକା ଘୋଷାରିବ ନାହିଁ । ପତାକା ନଷ୍ଟ ହୋଇଯିବା ଭଳି ଅବସ୍ଥାରେ ରଖାଯିବ ନାହିଁ କିମ୍ବା ଗୈରିକ ରଙ୍ଗକୁ ତଳକୁ ରଖି ଏହା ଉଡ଼ାଯିବ ନାହିଁ ।

## ପତାକାର ଅପବ୍ୟବହାର

ଘରର ଛାତତଳେ ବିଛାଇବା ଉଦ୍ଦେଶ୍ୟରେ କିମ୍ବା କୌଣସି ବେଶପୋଷାକର ଅଂଶରୂପେ ଏହାକୁ ବ୍ୟବହାର କରାଯିବ ନାହିଁ ।

ତକିଆ, ଗଦି, ରୁମାଲ, ଗାମୁଛା ବା ବାକ୍ସ ଉପରେ ଜାତୀୟ ପତାକାର ଛାପା ବା କୌଣସି ପ୍ରକାର ଚିତ୍ର ଅଙ୍କିତ କରାଯିବ ନାହିଁ ।

ଯାନବାହନ, ରେଲଗାଡ଼ି ବା ନୌକାର କୌଣସି ପାଖରେ ବା ଉପରେ ଜାତୀୟ ପତାକାକୁ ବିଛାଇ ବା ସଜାଇ ରଖାଯିବ ନାହିଁ । କେବଳ ସରକାରୀ ଓ ସାମରିକ ଶବସତ୍କାର ହିସ୍ତା ବ୍ୟତୀତ ଅନ୍ୟ କୌଣସି ଘଟଣାରେ ଏହି ପତାକାକୁ ଘୋଡ଼ଣୀରୂପେ ବ୍ୟବହାର କରାଯିବ ନାହିଁ ।

କୌଣସି ପ୍ରତିକୃତି ଉନ୍ମୋଚନ ଉତ୍ସବରେ ଯଦି ଏହାକୁ ବ୍ୟବହାର କରାଯାଉଥାଏ, ତେବେ ସ୍ୱତନ୍ତ୍ର ଭାବରେ ଓ ସୁଦୃଶ୍ୟ ସ୍ଥାନରେ ଏହାକୁ ଉଡ଼ାଇବାକୁ ହେବ ।

କୌଣସି ପ୍ରକାର ବିଜ୍ଞାପନରେ ବା ସେହି ଉଦ୍ଦେଶ୍ୟରେ ପତାକାକୁ ବ୍ୟବହାର କରିବା ନିଷିଦ୍ଧ । ଏଥିରେ କୌଣସି ଜିନିଷ ପୂରାଇ ଏହାକୁ ପାତ୍ରରୂପେ ବ୍ୟବହାର କରିବା ମଧ୍ୟ ଦୋଷାବହ । କେନ୍ଦ୍ର ସରକାରଙ୍କ ବିନାନୁମତିରେ କୌଣସି ବାଣିଜ୍ୟ ବ୍ୟବସାୟ କ୍ଷେତ୍ରରେ ପଣ୍ୟଦ୍ରବ୍ୟ ଉପରେ ପେଟେଣ୍ଟ ବା ଟ୍ରେଡମାର୍କରେ ଏହାର ବ୍ୟବହାର ନିଷିଦ୍ଧ ।

ପତାକା ଚିରିଗଲେ ବା ମଇଳା ହୋଇଗଲେ ଏହାକୁ ଯେ କୌଣସି ଭାବରେ ଫିଙ୍ଗିଦେବା ମଧ୍ୟ ଆଇନବିରୁଦ୍ଧ । ପତାକାର ମର୍ଯ୍ୟାଦା ଉପରେ ଯେପରି ଆଞ୍ଚ ନ ଆସେ, ସେହିପରି କୌଣସି ଉପାୟରେ କିମ୍ବା ପୋଡ଼ିଦେଇ ସମସ୍ତ ପତାକାଟିକୁ ଏକାଥରେ ନଷ୍ଟ କରିଦେବା ବିଧେୟ ।

ସରକାରଙ୍କ ବିନାନୁମତିରେ ପତାକାକୁ ଅର୍ଦ୍ଧନମିତ ଅବସ୍ଥାରେ ଉଡ଼ାଯିବ ନାହିଁ ।"

ଏହିଠାରେ ଜଣେ ପିଲା ପଚାରିଲା, "ପତାକାକୁ ଅର୍ଦ୍ଧନମିତ କରାଯାଏ କାହିଁକି ?"

ପ୍ରଧାନ ଶିକ୍ଷକ କହିଲେ, "ଦେଶର କିମ୍ବା ବିଦେଶର କୌଣସି ବିଶିଷ୍ଟ ବ୍ୟକ୍ତି ମରିଗଲେ ସରକାର ଶୋକଦିବସ ପାଳନ କରନ୍ତି । ସେହି ଉଦ୍ଦେଶ୍ୟରେ ଜାତୀୟ ପତାକାକୁ ଅଧେ ନୁଆଁଇ ଦିଆଯାଏ, ଏହା ଶୋକପାଳନର ଚିହ୍ନ । ପ୍ରଧାନ ମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁ ପରେ ଏଇଥିପାଇଁ ଆମର ସମସ୍ତ ଜାତୀୟ ପତାକାକୁ ବାର ଦିନ ପର୍ଯ୍ୟନ୍ତ ଅର୍ଦ୍ଧନମିତ ରଖାଯାଇଥିଲା ।"

ନିୟମଗୁଡ଼ିକ ପଢ଼ିସାରି ପ୍ରଧାନ ଶିକ୍ଷକ କହିଲେ, "ଏଥିରୁ ଜାଣୁଥିବ ଜାତୀୟ ପତାକାକୁ କିପରି ସର୍ବୋଚ୍ଚ ସମ୍ମାନ ଦିଆଯାଇଛି । ପୂର୍ବକାଳରେ ରାଜଛତ୍ରକୁ ଏହିପରି ସମ୍ମାନ ଦିଆଯାଉଥିଲା ।

ପୃଥିବୀରୁ ରାଜତନ୍ତ୍ର ଶାସନ ଲୋପ ପାଇବା ପରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠିତ ହୋଇଛି ଏବଂ ଜାତୀୟ ପତାକା ରାଜଛତ୍ରର ସ୍ଥାନ ନେଇଛି । ତେଣୁ ଯୁଦ୍ଧରେ ଅଥବା ଶାନ୍ତିରେ ଜାତୀୟ ପତାକାକୁ ସର୍ବୋଚ୍ଚ ସମ୍ମାନ ଦିଆଯାଉଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ଏହାର ଆଦର ଏବଂ ଗୁରୁତ୍ୱ ପୃଥିବୀରେ ଯଥେଷ୍ଟ ବଢ଼ିଯାଇଛି ।"



# ଆମ ଜାତୀୟ ସଙ୍ଗୀତ

ଆମ ଜାତୀୟ ପତାକା ଯେପରି ଆମ ଦୃଷ୍ଟିରେ ପବିତ୍ର, ଜାତୀୟ ସଙ୍ଗୀତ ମଧ୍ୟ ସେହିପରି ପବିତ୍ର । ଜନ୍ମଭୂମି ଉଦ୍ଦେଶ୍ୟରେ ରଚିତ ଏବଂ ସରକାରୀ ସ୍ତରରେ ଗୃହୀତ ଏହା ଏକ ସର୍ବଜନାଦୃତ ସଙ୍ଗୀତ । ପ୍ରତ୍ୟେକ ସ୍ୱାଧୀନ ଦେଶର ଜାତୀୟ ସଙ୍ଗୀତ ଅଛି । ଶୁଭକାର୍ଯ୍ୟ ଆରମ୍ଭରେ ଯେପରି ଦେବଦେବୀଙ୍କୁ ଆରାଧନା କରାଯାଏ, ଆନୁଷ୍ଠାନିକ ଜାତୀୟ କାର୍ଯ୍ୟମାନଙ୍କରେ ସେହିପରି ଜାତୀୟ ସଙ୍ଗୀତକୁ ବାଦ୍ୟ ଯନ୍ତ୍ର ସାହାଯ୍ୟରେ ବା କଣ୍ଠରେ ବୋଲାଯାଏ । ପରାଧୀନ ଥିଲାବେଳେ ଭାରତର ନିଜର ଜାତୀୟ ସଙ୍ଗୀତ ନ ଥିଲା । ବ୍ରିଟିଶ ଜାତୀୟ ସଙ୍ଗୀତ 'God save the King......' ସବୁଠାରେ ବୋଲା ଯାଉଥିଲା ।

ଯେଉଁ ଭାରତୀୟମାନେ ପ୍ରଥମେ ମୁକ୍ତି ସଂଗ୍ରାମରେ ଆଗୁଆ ହୋଇ ବାହାରିଲେ, ସେମାନେ ଉକ୍ତ ବିଦେଶୀୟ ସଂଗୀତକୁ ଗ୍ରହଣ କଲେ ନାହିଁ । ଭାରତୀୟ ଭାଷାରେ ଏବଂ ଭାରତଜନନୀଙ୍କ ଉଦ୍ଦେଶ୍ୟରେ ରଚିତ 'ବନ୍ଦେ ମାତରମ୍' ସଂଗୀତଟିକୁ ସେମାନେ ଏଥିପାଇଁ ବାଛିଲେ । ଏହା ବଙ୍ଗୀୟ ଲେଖକ ବଙ୍କିମ ଚନ୍ଦ୍ର ଚାଟାର୍ଜୀଙ୍କ ୧୮୮୨ରେ ପ୍ରକାଶିତ 'ଆନନ୍ଦ ମଠ' ଉପନ୍ୟାସରେ ଥିଲା । ଭାରତୀୟ ଜାତୀୟ କଂଗ୍ରେସର ୧୮୯୬ ଅଧିବେଶନରେ ସର୍ବପ୍ରଥମେ ଏହି ସଂଗୀତଟି ରାଜନୈତିକ ସଭାମଞ୍ଚରେ ବୋଲାଯାଇଥିଲା ।

ଭାରତ ସ୍ୱାଧୀନ ହେଲାପରେ ସରକାରୀ ସ୍ତରରେ ଏକ ଜାତୀୟ ସଙ୍ଗୀତକୁ ସ୍ୱୀକୃତି ଦେବା ଆବଶ୍ୟକ ପଡ଼ିଲା । ୧୯୪୭

ମସିହା ଅଗଷ୍ଟ ୧୪ ତାରିଖ ମଧ୍ୟରାତ୍ରରେ ଶାସନ ବଧାୟକ ସଭାର ବୈଠକ ଆରମ୍ଭରେ ଜଣେ ସଦସ୍ୟ 'ବନ୍ଦେ ମାତରମ୍' ଓ ରବୀନ୍ଦ୍ରନାଥ ଠାକୁରଙ୍କ ଲିଖିତ 'ଜନଗଣମନ' ସଙ୍ଗୀତ ଗାନ କରିଥିଲେ ଓ ଅନ୍ୟ ସଭ୍ୟମାନେ କୋରସ୍ ଗାଇଥିଲେ । ସେହି ସ୍ୱାଧୀନତା ଦିବସ ଉପଲକ୍ଷେ ଭାରତର ବେତାର କେନ୍ଦ୍ରମାନ ମଧ୍ୟ ସେ ଦୁଇଟିଯାକ ସଙ୍ଗୀତ ରିଲେ କରିଥିଲେ ।

## ଜନଗଣମନ······

ରବୀନ୍ଦ୍ରନାଥଙ୍କ ଦ୍ୱାରା ରଚିତ ଗୀତଟି ୧୯୧୧ ଡିସେମ୍ବର ୨୭ ତାରିଖରେ କଲିକତାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ପ୍ରଥମେ ବୋଲାଯାଇଥିଲା । ତତ୍ପରବର୍ଷ ଜାନୁଆରୀ ମାସରେ ରବୀନ୍ଦ୍ରନାଥଙ୍କ ଦ୍ୱାରା ସମ୍ପାଦିତ 'ତତ୍ତ୍ୱବୋଧିନୀ ପତ୍ରିକା'ରେ 'ଭାରତ ବିଧାତା' ଶୀର୍ଷକରେ ଏହି ସଙ୍ଗୀତଟି ପ୍ରଥମେ ପ୍ରକାଶ ପାଇଥିଲା । ୧୯୧୯ ମସିହାରେ କବି ନିଜେ ଏହାର ଇଂରାଜୀ ଅନୁବାଦ କରି 'Morning Song of India' (ଭାରତର ପ୍ରଭାତ ସଙ୍ଗୀତ) ନାମରେ ପ୍ରକାଶ କରିଥିଲେ । ସମସ୍ତ ସଙ୍ଗୀତଟିରେ ମୋଟ ପାଞ୍ଚଟି ପଦ ଅଛି ।

ରାଗରାଗିଣୀକୁ ଆଶ୍ରୟ ନ କଲେ ଭାରତୀୟ ସଙ୍ଗୀତ ଶ୍ରୁତି-ମଧୁର ହୁଏ ନାହିଁ । ଅଥଚ ଭାରତର ସାମରିକ ଓ ପୋଲିସ ବିଭାଗ ଯେଉଁ ବ୍ୟାଣ୍ଡ୍ ବାଦ୍ୟ ବ୍ୟବହାର କରନ୍ତି, ତାହାର ସ୍ୱରଯୋଜନା ପାଶ୍ଚାତ୍ୟ ରୀତିରେ ହୋଇଥାଏ । ତାଛଡ଼ା ସେଥିରେ କୌଣସି ଗୀତ ବୋଲାଯାଏ ନାହିଁ । ଗୀତର ସ୍ୱର (tune) କେବଳ ଯନ୍ତ୍ରରେ ଧ୍ୱନିତ ହୁଏ । ଆମର ନେତାମାନେ ସ୍ଥିର କଲେ ଯେଉଁ ଗୀତଟି ଭାରତୀୟ ଆଦର୍ଶ ଓ ଭାବଧାରା ଉଦ୍ରେକ କରୁଥିବ ଏବଂ ଯାହା

ପାଶ୍ଚାତ୍ୟ ଯନ୍ତ୍ର ମାଧ୍ୟମରେ ବୋଲାଯାଇପାରିବ, ସେହି ଗୀତଟିକୁ ସେମାନେ ଜାତୀୟ ସଙ୍ଗୀତ ରୂପେ ଗ୍ରହଣ କରିବେ । ପରୀକ୍ଷା କରିବାରୁ ଦେଖାଗଲା, 'ବନ୍ଦେ ମାତରମ୍' ଅପେକ୍ଷା 'ଜନଗଣମନ...' ଏଥିପାଇଁ ଅଧିକ ଉପଯୁକ୍ତ । ଏ ସମ୍ପର୍କରେ ଆଉ ଗୋଟିଏ କଥା ସ୍ମରଣ ରଖିବାକୁ ହେବ । ଜାତୀୟ ସଙ୍ଗୀତ ଅଳ୍ପ ସମୟ ମଧ୍ୟରେ ବୋଲାଯାଇପାରିଲା ଭଳି ହେବା ଦରକାର । 'ଜନଗଣମନ'ର ପ୍ରଥମ ଅଂଶଟିକୁ ଏହି ଦୃଷ୍ଟିରୁ ଗ୍ରହଣ କରାଗଲା ।

ତାପରେ ଉଠିଲା ଏହାର ସ୍ୱର ସଂଯୋଜନା ପ୍ରଶ୍ନ । ଭାରତର ବେତାର କେନ୍ଦ୍ରମାନଙ୍କରେ ପଚିଶ ପ୍ରକାର ଅର୍କେଷ୍ଟ୍ରାରେ ସ୍ୱର ଦିଆଯାଇ ତାହା ରେକର୍ଡ କରାଗଲା । ରେକର୍ଡ ବଜା ଯାଇ ଦେଖାଗଲା, ସେଥିରୁ କେବଳ ଦୁଇଟି ଚଳନୀୟ, ମାତ୍ର ତାହା ମଧ୍ୟ ପ୍ରଥମ ଶ୍ରେଣୀର ନୁହେଁ । ତେଣୁ ବିଦେଶୀୟ ସଙ୍ଗୀତଜ୍ଞମାନଙ୍କର ସାହାଯ୍ୟ ଓ ପରାମର୍ଶ ନେବା ଆବଶ୍ୟକ ପଡ଼ିଲା । ଲଣ୍ଡନରେ 'ବିବିସି'(ବ୍ରିଟିଶ ବ୍ରଡ଼କାଷ୍ଟିଙ୍ଗ୍ କର୍ପୋରେସନ୍)ଦ୍ୱାରା 'ଜନଗଣମନ'ର ଦୁଇଟି ସ୍ୱରସଙ୍ଗୀତ ରେକର୍ଡ କରାଯାଇ ଉଡ଼ାଜାହାଜ ଯୋଗେ ଅଣାଗଲା । ସେଥିରୁ ଗୋଟିଏ ଅତି ସନ୍ତୋଷଜନକ ବୋଲି ମନୋନୀତ ହେଲା । ଏହା ବଜାହେବାକୁ ମାତ୍ର ପଚିଶ ସେକେଣ୍ଡ ସମୟ ଲାଗୁଥିଲା । ତେଣୁ ସାମାନ୍ୟ ପରିବର୍ତ୍ତନ ପରେ ଏହା ଗୃହୀତ ହେଲା ।

ରବୀନ୍ଦ୍ରନାଥଙ୍କ ରଚିତ ସଙ୍ଗୀତର ଯେଉଁ ଆଦ୍ୟ ଅଂଶଟି ଆମ ଜାତୀୟ ସଂଗୀତ ରୂପେ ଗୃହୀତ ହୋଇଛି, ତାହା ନିମ୍ନରେ ଦିଆଗଲା ।

ଜନଗଣମନ ଅଧିନାୟକ ଜୟ ହେ
ଭାରତ-ଭାଗ୍ୟବିଧାତା ।
ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା—
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା—
ଉଚ୍ଛଳ-ଜଳଧି-ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ-ଗାଥା ।
ଜନଗଣ-ମଙ୍ଗଳ-ଦାୟକ ଜୟ ହେ
ଭାରତ-ଭାଗ୍ୟବିଧାତା ।
ଜୟ ହେ, ଜୟ ହେ, ଜୟ ହେ
ଜୟ ଜୟ ଜୟ ଜୟ ହେ ।

ଉପରଲିଖିତ ପଦଟିର ସରଳ ଓଡ଼ିଆ ଅର୍ଥ ଏହିପରି—

ତୁମେ ସମସ୍ତ ମନୁଷ୍ୟ ଜାତିର ମନକୁ ନିୟନ୍ତ୍ରଣ କରୁଛ ।
ଭାରତର ଭାଗ୍ୟ ତୁମ ହାତରେ ।
ତୁମର ଜୟ ହେଉ ।
ପଞ୍ଜାବ, ସିନ୍ଧୁ, ଗୁଜରାଟ, ମହାରାଷ୍ଟ୍ର,
ଦ୍ରାବିଡ଼, ଉତ୍କଳ, ବଙ୍ଗ ଆଦି ରାଜ୍ୟ,
ବିନ୍ଧ୍ୟ ଓ ହିମାଳୟ ପର୍ବତ, ଯମୁନା ଓ ଗଙ୍ଗା ନଦୀ,
ଭାରତ ମହାସାଗରର ଉତ୍ତାଳ ତରଙ୍ଗମାଳା,
ସମସ୍ତେ ତୁମ ଶୁଭ ନାମ ଶୁଣିଲେ ଜାଗି ଉଠନ୍ତି;
ତୁମର ଶୁଭ ଆଶୀର୍ବାଦ ଭିକ୍ଷା କରି ସେମାନେ
ତୁମ ମହିମା ଗାନ କରନ୍ତି ।

ହେ ଭାରତର ଭାଗ୍ୟବିଧାତା,
ତୁମେ ସମଗ୍ର ମାନବ ଜାତିର ହୃଦୟକାନ୍ତ ଅଟ;
ତୁମର ଜୟ ହେଉ, ଜୟ ହେଉ, ଜୟ ହେଉ ।

**ବନ୍ଦେ ମାତରମ୍......**

ଭାରତର ଜାତୀୟ ସଙ୍ଗୀତରୂପେ ଏହି ଗୀତଟିକୁ ଗ୍ରହଣ କଲାବେଳେ ଶାସନବିଧାୟକ ସଭା ଆଉ ଏକ ନିଷ୍ପତ୍ତି କଲେ ଯେ ଯେହେତୁ 'ବନ୍ଦେ ମାତରମ୍' ସଙ୍ଗୀତଟି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଜାତୀୟ ଭାବରେ ଏ ପର୍ଯ୍ୟନ୍ତ ଅନୁପ୍ରାଣିତ କରିଆସିଛି, ତାକୁ ମଧ୍ୟ 'ଜନଗଣ-ମନ' ପରି ସମାନ ମର୍ଯ୍ୟାଦା ଦିଆଯିବ । ଏହି ସଙ୍ଗୀତର ପ୍ରଥମ ପଦଟି ହେଲା :

ବନ୍ଦେ ମାତରମ୍ !
ସୁଜଲାଂ, ସୁଫଲାଂ, ମଲୟଜ-ଶୀତଳାଂ,
ଶସ୍ୟଶ୍ୟାମଲାଂ ମାତରମ୍ !
ଶୁଭ୍ର ଜ୍ୟୋତ୍ସ୍ନା-ପୁଲକିତଯାମିନୀମ୍,
ଫୁଲ୍ଲକୁସୁମିତ-ଦ୍ରୁମଦଳ-ଶୋଭିନୀମ୍,
ସୁହାସିନୀଂ, ସୁମଧୁରଭାଷିଣୀଂ,
ସୁଖଦାଂ, ବରଦାଂ, ମାତରମ୍ !

ଉପରଲିଖିତ ପଦଟିର ସରଳ ଓଡ଼ିଆ ଅର୍ଥ ତଳେ ଦିଆଗଲା ।

ହେ ମା, ମୁଁ ତୋତେ ନମସ୍କାର କରୁଅଛି ।
ପ୍ରଚୁର ଜଳ ଏବଂ ସୁମିଷ୍ଟ ଫଳରେ ତୋ ଦେହ ପରିପୂର୍ଣ୍ଣ,
ଦକ୍ଷିଣର ମଳୟ ପବନଦ୍ୱାରା ତୋ ଅଙ୍ଗ ସର୍ବଦା ଶୀତଳ,
ସବୁଜ ଶସ୍ୟକ୍ଷେତ୍ର ତୋ ରୂପକୁ ଶ୍ୟାମଳ କରିଛି;
ହେ ମା, ମୁଁ ତୋତେ ନମସ୍କାର କରୁଅଛି ।

ତୋର ରାତ୍ରିଗୁଡ଼ିକ ଉଜ୍ଜ୍ୱଳ ଚନ୍ଦ୍ରାଲୋକଯୋଗୁ ଆନନ୍ଦପ୍ରଦ,
ଫୁଟନ୍ତା ଫୁଲରେ ମଣ୍ଡି ହୋଇ ବୃକ୍ଷଗୁଡ଼ିକ ତୋର ଶୋଭାବର୍ଦ୍ଧନ କରେ,
ତୋର ହସ ମଧୁର, ତୋର ବଚନ ମଧ୍ୟ ମଧୁର,
ତୁ ସୁଖ ଦେଇପାରୁ, ତୁ ବର ଦେଇପାରୁ,
ହେ ମା, ମୁଁ ତୋତେ ନମସ୍କାର କରୁଅଛି ।

ଭାରତର ସ୍ୱାଧୀନତା ସଂଗ୍ରାମରେ, ବିଶେଷତଃ ବଙ୍ଗପ୍ରଦେଶର ସ୍ୱଦେଶୀ ଆନ୍ଦୋଳନବେଳେ (୧୯୦୫-୧୯୦୮) ଏହି 'ବନ୍ଦେ ମାତରମ୍' ଧ୍ୱନି ବିପ୍ଳବୀମାନଙ୍କ ମନରେ ପ୍ରବଳ ଉନ୍ମାଦନା ଆଣି ଦେଇଥିଲା । ସେହି ସମୟରେ ଅରବିନ୍ଦ ଘୋଷ 'ବନ୍ଦେ ମାତରମ୍' ନାମରେ ଏକ ପତ୍ରିକା ସମ୍ପାଦନା କରୁଥିଲେ । ସେଥିରେ ପ୍ରକାଶିତ ରାଜଦ୍ରୋହମୂଳକ ଲେଖା ଯୋଗୁ ସେ ଏବଂ ବିପିନଚନ୍ଦ୍ର ପାଲ୍ ଇଂରେଜ ସରକାରଦ୍ୱାରା ଦଣ୍ଡିତ ହୋଇଥିଲେ ।

ଭାରତ ପୂର୍ଣ୍ଣ ସ୍ୱାଧୀନତା ପାଇବାପରଠାରୁ ସେ ସବୁ ଅସୁବିଧା ଦୂର ହୋଇଯାଇଛି । ସ୍ୱାଧୀନ ଜାତି ହିସାବରେ ଆମର ଗୋଟିଏ ଜାତୀୟ ପତାକା ଏବଂ ଗୋଟିଏ ଜାତୀୟ ସଙ୍ଗୀତ । କେହି ତାର ବିରୋଧ କରିପାରିବେ ନାହିଁ କି ଅସମ୍ମାନ କରିପାରିବେ ନାହିଁ । ଜାତୀୟ ସଙ୍ଗୀତ ବୋଲାହେଲାବେଳେ ପ୍ରତ୍ୟେକେ ଠିଆ ହୋଇ ରହିବେ ବୋଲି ନିୟମ ଅଛି । ଇଂରାଜୀ ଭାଷାରେ 'ଜନଗଣମନ'କୁ National Anthem ବା ଜାତୀୟ ବନ୍ଦନା ଏବଂ 'ବନ୍ଦେ ମାତରମ୍'କୁ National Song ବା ଜାତୀୟ ସଙ୍ଗୀତ ଆଖ୍ୟା ଦିଆଯାଇଥାଏ ।

ବିଭିନ୍ନ ଦେଶର ଜାତୀୟ ବନ୍ଦନାକୁ ଅନୁଧ୍ୟାନ କଲେ ଜଣାଯାଏ କେତେକ ସ୍ଥଳରେ ତାହା ରାଜା ବା ଶାସନକର୍ତ୍ତାଙ୍କ

ଉଦ୍ଦେଶ୍ୟରେ ପ୍ରାର୍ଥନା, କେଉଁଠି ବା ଯୁଦ୍ଧ ବିଦ୍ରୋହରେ ବିଜୟ-କାଳୀନ ସଙ୍ଗୀତ, ଆଉ କେଉଁଠି ଜନ୍ମଭୂମିର ପ୍ରଶସ୍ତି ଅର୍ଥରେ ରଚିତ ହୋଇଥାଏ । ପୁଣି ଦେଖାଯାଏ ଜାତିର କର୍ତ୍ତୃତ୍ୱ ଓ ସମ୍ପର୍କ ବଦଳିଲେ ତାହା ବଦଳେ; ଯେପରି ସୋଭିଏଟ ରାଷ୍ଟ୍ରର ସାଂପ୍ରତିକ ଜାତୀୟ ସଙ୍ଗୀତ ୧୯୪୪ ମସିହାରେ ପୂର୍ବର କମ୍ୟୁନିଷ୍ଟ ବନ୍ଦନା 'The Internationale' ସ୍ଥାନରେ ଗୃହୀତ ହୋଇଛି ।

ଇଂଲଣ୍ଡର ଜାତୀୟ ବନ୍ଦନା 'God save the King (Queen)' ପୂର୍ବରୁ ରଚିତ ହୋଇଥିଲେ ହେଁ ୧୮୨୫ ମସିହାରୁ ସରକାରୀ ସ୍ୱୀକୃତି ଲାଭ କରିଛି । ଫ୍ରାନ୍ସର ଜାତୀୟ ସଙ୍ଗୀତ ବିପ୍ଳବର ସ୍ମୃତି ମନରେ ଜାଗ୍ରତ କରେ । ଫରାସୀ ବିପ୍ଳବ ସମୟରେ ସାମରିକ ବିଦ୍ରୋହୀମାନେ ରାଜପ୍ରାସାଦ 'ଟୁଇଲରୀ'କୁ ପୋଡ଼ି ଧ୍ୱଂସ କରୁଥିବାବେଳେ ସେହି ଗୀତ ଗାନ କରିଥିଲେ । ସେହିପରି ଯୁକ୍ତରାଷ୍ଟ୍ର ଆମେରିକାର ଜାତୀୟ ସଙ୍ଗୀତ ରଚିତ ହୋଇଥିଲା ଫ୍ରାନ୍‌ସିସ୍ ସ୍କଟ୍ କି ଙ୍କ ଦ୍ୱାରା, ଯେତେବେଳେ ସେ ଏକ ବ୍ରିଟିଶ ଜାହାଜରେ ବନ୍ଦୀ ହୋଇ ବାଲ୍‌ଟିମୁର ବନ୍ଦର ଉପରେ ଗୋଳାବର୍ଷଣ ଦୃଶ୍ୟ ଦେଖୁଥିଲେ । ମୋଟାମୋଟି ଦେଖିଲେ ଏସବୁ ସଂଗୀତଗୁଡ଼ିକ ଜାତୀୟଭାବ ଉଦ୍ରେକକାରୀ ।



# କେତୋଟି ଲୋକପ୍ରିୟ ଜାତୀୟ ସଙ୍ଗୀତ

## ଧ୍ୱଜ ଗୀତ

ରାଗ—ଖମାଜ ତାଳ—କେହେରୱା

ବିଜୟୀ ବିଶ୍ୱ ତିରଙ୍ଗା ପ୍ୟାରା
ଝଣ୍ଡା ଉଞ୍ଚା ରହେ ହମାରା ॥
ସଦା ଶକ୍ତି ସରସାନେ ୱାଲା
ପ୍ରେମ-ସୁଧା ବରସାନେ ୱାଲା
ବୀରୋଁ କୋ ହର୍ଷାନେ ୱାଲା
ମାତୃଭୂମି କା ତନ ମନ ସାରା
ଝଣ୍ଡା ଉଞ୍ଚା ରହେ ହମାରା । ୧ ।
ଶାନ ନ ଇସକୀ ଜାନେ ପାୟେ
ଚାହେ ଜାନ ଭଲେ ହୀ ଜାୟେ
ବିଶ୍ୱ ବିଜୟ କରକେ ଦିଖଲାୟେଁ
ତବ ହୋୱେ ପ୍ରାଣ ପୂର୍ଣ୍ଣ ହମାରା
ଝଣ୍ଡା ଉଞ୍ଚା ରହେ ହମାରା । ୨ ।

ରଚନା—ଶ୍ୟାମଲାଲ ଗୁପ୍ତ 'ପାର୍ଷଦ'
(କଂଗ୍ରେସ ସେବାଦଳ ଗୀତାବଳୀ)



ସାରେ ଜହାଁସେ ଅଚ୍ଛା ହିନ୍ଦୁସ୍ତାଁ ହମାରା
ହମ୍ ବୁଲ୍‌ବୁଲେଁ ହୈଁ ଇସ୍‌କୀ, ୟହ ଗୁଲସ୍ତାଁ ହମାରା ।
ପରବତ୍ ମେଁ ହୋଁ ଅଗର୍ ହମ୍ ରହତା ହୈ
ଦିଲ ବତନ ମେଁ

ସମ୍‌ଝୋ ଓ୍ୱହ୍ମ ହମେଁ ଖ୍ୱା ଭଲ୍‌ ହୋ ଜହାଁ ହମାରା
ପରବତ୍‌ ଓ୍ୱହ ସବ୍‌ସେ ଊଁଚା ହମ୍‌ସାୟା ଆସ୍‌ମାନ୍‌କା ।
ୱୋ ସନ୍ତ୍ରୀ ହମାରା ଓ୍ୱହ ପାସଓ୍ୱାଁ ହମାରା ।
ଗୋଦୀ ମେଁ ଖେଲ୍‌ତୀ ହୈଁ ଜିସକୀ ହଜାରୋଁ ନଦିୟାଁ
ଗୁଲ୍‌ଶନ୍‌ ହୈ ଜିନ୍‌ କେ ଦମ୍‌ ସେ ରଶକେ ଜିନାଁ ହମାରା
ମଜହବ୍‌ ନହୀଁ ସିଖାତୀ ଆପସ୍‌ ମେ ବୈର୍‌ କରନା
ହିନ୍ଦୀ ହୈ ହମ୍‌ ବତନ୍‌ ହୈ ହିନ୍ଦୁସ୍ତାଁ ହମାରା ।

—ସାର୍‌ ମହମ୍ମଦ ଇକ୍‌ଓ୍ୱାଲ୍‌

●

କଦମ୍‌ କଦମ୍‌ ବଢ଼ାୟେ ଯା'
ଖୁସି କେ ଗୀତ ଗାୟେ ଯା'
ଜିନ୍ଦେଗୀ ହୈ କୌମକୀ ତୁ
କୌମପେ ଲୁଟାୟେ ଯା' ।

ଚଲେ ଦିଲ୍ଲୀ ପୁକାର କେ
କୌମୀ ନିଶାନ ସମ୍ଭାଲକେ
ଲାଲ କଲେ ପେ ଗାଡ଼କେ
ଲହରାୟେ ଯା ଲହରାୟେ ଯା ।

(ଆଜାଦ ହିନ୍ଦ ଫୌଜର ମାର୍ଚ୍ଚିଂ ଗୀତ)

●

ଗାଅ ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନ ରେ,
ଗାଏ ସାଗର, ଭୂଧର, ଅମ୍ବର ଚୁମ୍ବିତ
ଗୁଲ ହିମାଚଳ ଗିରିବରକର୍ଣ୍ଣିତ

କମ୍ପେ ବିନ୍ଧ୍ୟଗିରି କାନନ କୁଞ୍ଜେ
ଲମ୍ଫେ ନିର୍ଝରିଣୀ ପ୍ରପାତପୁଞ୍ଜେ
ଚପଳା ଚମକେ ଗଗନେ ପୁଲକେ
ନୀରଦ ବିଲୀନ ରେ;
ଜାତୀୟ କେତନ ଉଡ଼ଇ କି ଗର୍ବ
ଅରିକୁଳ ଦର୍ପ କରିବ କି ଖର୍ବ
ଜାତୀୟ ଗୌରବ ଜାତୀୟ ବିଭବ
ଜାତୀୟ ଜୀବନ ରେ ।

—ସ୍ମରଣ କବି ବାଞ୍ଛାନିଧି ମହାନ୍ତି



ରେ ପତାକା !
ଜାତିର ଗରବ, ଜାତିର ଜୀବନ ପରାଣ ବନ୍ଧୁ ରେ ।
ଏକତା ପୀରତି ଶାନ୍ତି ମୂରତି
ସୁନ୍ଦର କେ ତୋର ସମାନ ନୋହୁ ରେ ।
ତୋହର ଲାଗି କେତେ ଯେ ସମର
ଲାଗିଛି, ଜାଗିଛି କୀରତି ଅମର,
ତୋହରଲାଗି କେତେ କାରାଗାର
ବରିଲେ, ମରିଲେ ସମର-ଭୂମିରେ । ୧ ।

ଉଡ଼ୁଛୁ ଉଡ଼ୁଛୁ ଉଡ଼ୁଥିବୁ ପରା
ଯାବତ ଏ ଦେଶ ଧରିଥିବ ଧରା
ଯାବତ ଜାତିର ଜଣିଏ ପରାଣେ
ଥିବ ତୁ ରାଜବୁ ଗଗନ ଛୁଇଁ ରେ ।

—ସ୍ମରଣ କବି ବାଞ୍ଛାନିଧି ମହାନ୍ତି



ପତାକା ତଳକୁ ଆସ ରେ
ଗାନ୍ଧୀନାମେ ଯେବେ ବିଶ୍ୱାସ ଅଛୁ
ପତାକା ତଳକୁ ଆସ ରେ ।
ମୁକତି-ଗଙ୍ଗାର ଢେଉ ଛୁଟିଆସେ
ବେଗାବେଗି ଡିଅଁ ଝାସ ରେ ।

ଜଳିଲାଣି ଅଉ ପ୍ରଳୟ ଅନଳ
ଥରଛଠେ ଆଜ ଅଷ୍ଟକୁଳାଚଳ
ଦେବତା ଦେଶରେ ଦାନବ ସଜାଉ
ମେଲିଅଛି ନାଗଫାଶ ରେ ।

—ଜାତୀୟ କବି ବୀରକିଶୋର

●

## ଭାରତଗୀତିକା

ସର୍ବେଷାଂ ନୋ ଜନନୀ ଭାରତ
ଧରଣୀ କଳ୍ପଲତେୟଂ ।
ଜନନୀବତ୍ସଳତନୟଗଣୈସ୍ତତ୍—
ସମ୍ୟକ୍ ଶର୍ମ ବିଧେୟଂ । ଧ୍ରୁବଂ ।
ହିମଗିରି-ସୀମନ୍ତିତ-ମସ୍ତକମିଦ—
ମମ୍ବୁଧି ପରିଗତପାର୍ଶ୍ୱମ୍ ।
ଅସ୍ମଜ୍ଜନ୍ମଦମନ୍ନଦମନଘଂ
ଶ୍ରୀତପୁରାତନମାର୍ଷମ୍ ॥
ବିଜନିତହର୍ଷଂ ଭାରତବର୍ଷଂ
ବିଶ୍ୱୋତ୍କର୍ଷନିଦାନମ୍ ।
ଭାରତଶର୍ମଣି କୃତମସ୍ମାଭି—
ର୍ନବମିଦମୈକ୍ୟବିଧାନମ୍ ॥

*　　*　　*

ଭାରତପଙ୍କଜଦଳମିଦମୁଜ୍ଜ୍ୱଳ—
ମଣ୍ଡଳମିତି ବଦତଂ ସତ୍
ତସ୍ୟ କୃତେ ବସୁମଣ୍ଡ ସମେତା
ବନ୍ଧୁତାଶୋଜ୍ଜ୍ୱଳ-ସଂସତ୍ ॥
ଭାରତମେକା ଗତିରସ୍ମାକଂ ନାପରାସ୍ତି ଭୂବି ନାମ ।
ସର୍ବାଦୌ ପରିଷତ୍କର୍ମଣି ତତ୍ ଭାରତମେବ ନମାମଃ ॥

— କବିବର ରାଧାନାଥ ରାୟ



ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର

